ଓଡ଼ିଶା ଶିକ୍ଷା ବିଭାଗୀୟ ଡିରେକ୍ଟର ମହୋଦୟଙ୍କ ଦ୍ୱାରା ଅତିରିକ୍ତ
ସାହାଯ୍ୟରୂପେ ମଞ୍ଜୁରୀପ୍ରାପ୍ତ ।

# କଥା ସୁମନ

ଦ୍ୱିତୀୟ ଭାଗ
(ତୃତୀୟ ଶ୍ରେଣୀ ନିମନ୍ତେ)

ରଚନା—
କୁମାରୀ ବିଷ୍ଣୁପ୍ରିୟା ଦାସ
ଶିକ୍ଷୟିତ୍ରୀ, କ୍ୟାପିଟାଲ୍ ହାଇସ୍କୁଲ,
ଭୁବନେଶ୍ୱର
ଓ
ଅଧ୍ୟାପକ ଶ୍ରୀଧର ଦାସ ଏମ୍. ଏ. ଡି. ଇଡ୍
ରେଭେନ୍‌ସା କଲେଜ, କଟକ

ସଂଶୋଧିତ ନୂତନ ସଂସ୍କରଣ

୧୯୫୯
ପ୍ରକାଶକ
ଶ୍ରୀ ସତ୍ୟନାରାୟଣ ମିଶ୍ର, ପ୍ରୋପ୍ରାଇଟର
ଓଡ଼ିଶା ପବ୍ଲିଶିଂ ହାଉସ୍
କଟକ—୨

ମୂଲ୍ୟ—ଆଠଅଣା ବା ୫୦ ନୂଆ ପଇସା

# ସୂଚୀ

# କଥା ସୁମନ

## ବୁଦ୍ଧିର ବଳ

ଗୋଟିଏ ଜଙ୍ଗଲରେ ଗୃତୋଟି ପ୍ରାଣୀ ବନ୍ଧୁ ହୋଇ ରହୁଥିଲେ । ସେମାନେ ହେଉଚନ୍ତି—ଗୋଟିଏ ସିଂହ, ଗୋଟିଏ ଗଧିଆ, ଗୋଟିଏ, ବିଲୁଆ ଓ ଗୋଟିଏ ମୂଷା । ଏମାନେ ଯେଉଁ ବଣରେ ଥିଲେ ସେହି ବଣରେ ଗୋଟିଏ ହରିଣ ମଧ୍ୟ ରହୁଥିଲା । ହରିଣଟି ବଣର ଘାସପତ୍ର ଖାଇ ଖୁବ୍ ମୋଟା ଓ ବଳୁଆ ହୋଇଥିଲା । ତାକୁ ଖାଇବାପାଇଁ ସିଂହ, ଗଧିଆ ଓ ବିଲୁଆ ତିନିଙ୍କର ଭାରି ଲୋଭ । କିନ୍ତୁ ସେ ଏପରି ବେଗରେ ଦୌଡ଼ିପାରେ ଯେ, ସିଂହ ମଧ୍ୟ ତାକୁ ଧରି ପାରେ ନାହିଁ । ଛାର ବିଲୁଆ ଓ ଗଧିଆ ତାର କଅଣ କରିବେ ?

ଦିନେ ବିଲୁଆ ଅନ୍ୟ ତିନି ବନ୍ଧୁଙ୍କୁ ଡାକି କହିଲା, "ଆମ ବନ୍ଧୁ ସିଂହ ହେଉଛନ୍ତି ବଣର ରଜା । ହରିଣଟାକୁ ଖାଇବାକୁ ତାଙ୍କର ଖୁବ୍ ଇଚ୍ଛା, ଆମର ମଧ୍ୟ ଇଚ୍ଛା । କିନ୍ତୁ ସେ ପବନ ପରି ଦଉଡ଼ୁଛି, ତେଣୁ ତାକୁ ଧରି ହେଉନାହିଁ । ମୁଁ ଗୋଟାଏ ଉପାୟ ସ୍ଥିର କରିଛି । ମୂଷା ଟିକିଏ ସାହାଯ୍ୟ କଲେ ତାକୁ ଧରି ହେବ ।"

ଏ କଥା ଶୁଣି ମୂଷା କହିଲା, "ମୁଁ ଅତି ଶ୍ରେଷ୍ଠ ପ୍ରାଣୀ । ହରିଣକୁ ମୁଁ କପରି ମାରି ପାରିବ ବୁଝିପାରୁନାହିଁ । ତେବେ ତୁମ୍ଭେମାନେ ଯାହା କହିବ, ତାହା କରିବାକୁ ପ୍ରାଣପଣେ ଚେଷ୍ଟା କରିବ ।"

ବିଲୁଆ ହସି ହସି କହିଲା, "ନାହିଁ ବନ୍ଧୁ ! ହରିଣକୁ ମାରିବା ପାଇଁ ତୁମକୁ କେହି କହୁନାହିଁ । ତୁମଦ୍ୱାରା ଯାହା ହୋଇ ପାରିବ ସେହିପରି କାମଟିଏ କରିବାକୁ ହେବ । ରାତିରେ ହରିଣ ଯେଉଁଠି ଶୋଇଥିବ, ସେଠାକୁ ତୁମେ ଯିବ । ଧୀରେ ଧୀରେ ତା ଗୋଡ଼ ପାଖକୁ ଯାଇ ହଠାତ୍ ତା ଗୋଡ଼ ଗଣ୍ଠିକୁ ରହିକରି କାମୁଡ଼ି ପଳାଇ ଆସିବ । ତେଣିକି ଯାହା କରିବାର କଥା ଆମେ କରିବୁ ।"

ମୂଷା ଏକଥା ଶୁଣି କହିଲା, "ଏ କାମ ମୁଁ ବେଶ୍ କରି ପାରିବି ।"

ସିଂହ ବିଲୁଆକୁ ପଚାରିଲା, "ଏଥିରେ କଅଣ ହେବ ?

ବିଲୁଆ କହିଲା, "ହରିଣ ଗୋଡ଼କୁ ମୂଷା କାମୁଡ଼ି ଦେଲେ ତାହାର ଗୋଡ଼ ଦରଜ ହେବ । ତେଣୁ ସେ ଆଉ ବେଗରେ ଦଉଡ଼ି ପାରିବ ନାହିଁ । ତାହାହେଲେ ତୁମେ ତାକୁ ସହଜରେ ମାରି ପାରିବ ।"

ବନ୍ଧୁର ଅନୁସାରେ କାମ ହେଲା । ରାତିରେ ମୂଷା ବଣସାକ ବୁଲି ବୁଲି ହରିଣକୁ ପାଇଲା । ସେତେବେଳକୁ ହରିଣ ଚରିବୁଲି ଆସି ଗୋଟିଏ ଗହଳିଆ ବୁଦାମୂଳେ ଶୋଇଥାଏ । ମୂଷା ଧୀରେ ଧୀରେ ତା ପାଖକୁ ଯାଇ ଦେଖିଲା ଯେ ସେ ନିଶ୍ଚିନ୍ତରେ ଶୋଇଛି ।

ବେଳ ଜଣ୍ଡି ମୂଷା ତା ଗୋଡ଼ ଗଣ୍ଡିକୁ ଫୁଲାଏ କାମୁଡ଼ ଦେଇ ବୁଦା ଭିତରେ ଲୁଚିଗଲା ।

ହଠାତ୍ ହରିଣର ନିଦ ଭାଙ୍ଗିଗଲା । ଦେଖେ ତ ପାଖରେ କେହି ନାହାଁନ୍ତି । ତା ଗୋଡ଼ରୁ ରକ୍ତଧାର ବହୁଛି । ଛଟ ପଟ ହୋଇ ସେ ଆଖପାଖ ଖୋଜିଲା । ବାହାରିକୁ ଦେଖିବାକୁ ନ ପାଇ ପୁଣି ଶୋଇଲା । ମୂଷା ଚୁପ୍ କରି ପଳାଇ ଆସି ବନ୍ଧୁମାନଙ୍କ ପାଖେ ପହଞ୍ଚିଲା ।

ମୂଷା ତାର କାମ କରି ଆସିଥିବାର ଶୁଣି ସମସ୍ତେ ତାକୁ ସାବାସ୍ କହିଲେ ।

●

ଦୁଇ ତିନି ଦିନ ପରେ ହରିଣର ଗୋଡ଼ଟା ଫୁଲିଗଲା । ଦରଜ ହେତୁ ଚାଲିବାରେ ବଡ଼ କଷ୍ଟ ହେଲା । ସେ ଗୋଡ଼ଟିକୁ ଆଉ ଭୂଇଁରେ ଲଗାଇ ପାରିଲା ନାହିଁ ।

କିଛି ସମୟ ପରେ ହରିଣକୁ ଭୋକ ହେଲା । ସେ ତିନି ଗୋଡ଼ରେ ଭର ଦେଇ ଡେଇଁ ଡେଇଁ ଘାସ ଚରିବାକୁ ଲାଗିଲା । ଗଧିଆ ଓ ଶିଆଳୁଆ ହରିଣ ଚରୁଥିବାର ଦେଖି ସିଂହକୁ କହିଲେ, "ଏବେ ତୁମେ ଯାଇ ହରିଣକୁ ମାରି ଆଣ । ଆଜି ଗୋଟିଏ ଭଲ ଭୋଜି ହେବ ।"

ସିଂହ ତା ଆଡ଼କୁ ଆସୁଥିବାର ଦେଖି ହରିଣ ପଳାଇ ଯିବାକୁ ଚେଷ୍ଟା କଲା । ଖଣ୍ଡିଆ ଗୋଡ଼ରେ ସେ ବେଗରେ ଦଉଡ଼ ପାରିଲା ନାହିଁ । ସିଂହ ଦୁଇ ଡେଉଁରେ ଯାଇ ତାକୁ ମାଡ଼ି ବସିଲା ।

ହରିଣକୁ ମାରି ସିଂହ ତାକୁ କାମୁଡ଼ି ନେଇ ଆସିଲା । ଗଧିଆ, ବିଲୁଆ ଓ ମୂଷା ହରିଣକୁ ଦେଖି ଭାରି ଖୁସି ହେଲେ । ବିଲୁଆ ମନେ ମନେ ଭାବୁଥାଏ, "ଏହାର ମାଂସ ଏକା ସିଂହକୁ ନିଅଣ୍ଟ ହେବ । ଆମ ପାଇଁ ବଳିବ କାହିଁ ? କପରି ଅନ୍ୟମାନେ ନ ଖାଆନ୍ତେ କି ମୁଁ ଏକୁଟିଆ ଖାଆନ୍ତି ।"

ମନ କଥା ମନରେ ରଖି ବିଲୁଆ ଅନ୍ୟମାନଙ୍କୁ କହିଲା, "ତୁମ୍ଭେମାନେ ସମସ୍ତେ ଗାଧୋଇ ଆସ । ମୁଁ ହରିଣକୁ ଜଗି ରହୁଛି । ତୁମ୍ଭେମାନେ ଗାଧୋଇ ଆସିଲେ ମୁଁ ଗାଧୋଇବାକୁ ଯିବି; ଗାଧୋଇ ସାରିଲେ ସମସ୍ତେ ଏକାଠି ଖାଇବା ।"

ସମସ୍ତେ ନଈକୁ ଗାଧୋଇ ଗଲେ । ବିଲୁଆ ହରିଣକୁ ଜଗି ବସିଥାଏ ।

କିଛି ସମୟ ପରେ ସିଂହ ଗାଧୋଇ ଆସି ପହଞ୍ଚିଲା । ବିଲୁଆ ମୁହଁ ଶୁଖାଇ କାନ୍ଦ କାନ୍ଦ ହୋଇ କହିଲା, "ବନ୍ଧୁ ! ମୁଁ ଏ ମାଂସ ଖାଇବି ନାହିଁ । କାଲି ରାତିରେ ମୂଷା ମୋତେ କହିଲା—ମୁଁ ହରିଣର ଗୋଡ଼କୁ କାମୁଡ଼ି ଦେବାରୁ ସିନା ସିଂହ ତାକୁ ଧରି ମାରିଲା । ସିଂହ ମୋଠାରୁ ଶ୍ରେଷ୍ଠ ! ଛାର ମୂଷା ତମକୁ ଏପରି ଅପମାନ ଦେଇ କହିଲା । ମୁଁ ଏକଥା ଶୁଣି ସେ ମାଂସକୁ କପରି ଛୁଇଁବି ?

ସିଂହ ଏ କଥା ଶୁଣି ମନେ ମନେ ରାଗି ଯାଇ କହିଲା, ତୁମେ ଏକଥା ମୋ ଆଗରେ କହି ଭଲ କରିଛ । "ସବୁ ଯାଉ ମହତ ଥାଉ । ମହତ ଗଲେ ନ ମିଳେ ଆଉ ।" ମୁଁ କେବେହେଲେ ସେ ମାଂସ ଖାଇବି ନାହିଁ । ତାକୁ ଖାଇଲେ ମୂଷା କହି ବୁଲିବ—

ମୋ ଅନୁଗ୍ରହରୁ ସିଂହ ଖାଇବାକୁ ପାଇଲା । ତା ହେବ ନାହିଁ । ମୋ ଦେହରେ କଅଣ ବଳ ନାହିଁ ? ବନରୁ ଆଉ ଗୋଟିଏ ଦୁଇଟା ଜନ୍ତୁ ମାରିଆଣି ଖାଇବି ?



ଏହା କହି ସିଂହ ବଣ ଭିତରକୁ ଚାଲିଗଲା ।

କିଛି ସମୟ ପରେ ମୂଷା ଆସି ପହଞ୍ଚିଲା । ବିଲୁଆ କହିଲା, "ଭାଇ, ଆମ ଭାଗ୍ୟ ଖରାପ । ସିଂହ ଖବର ପାଇଛି ଯେ ହରିଣ-ଠାରେ ତମ ଦାନ୍ତର ବିଷ ଚଳିଯାଇଛି । ସେଥିପାଇଁ ସେ ତାକୁ ନ ଖାଇ ତମକୁ ଖାଇବ ବୋଲି ଠିକ୍ କରିଛି ।"

ମୂଷା ଏହା ଶୁଣିଲାକ୍ଷଣି ଭୟରେ ସେଠାରୁ ପଳାଇଯାଇ ଗାତରେ ପଶିଲା ।

ଆଜ କଛୁ ବେଳ ପରେ ଗଧିଆ ଆସି ପହଞ୍ଚିଲା । ବିଲୁଆ ତାକୁ ଦେଖି କହିଲା, "ଆଜ ସିଂହ ତୁମ ଉପରେ ଘାର ରାଗିଛ । ସାଥିରେ ସିଂହୀକୁ ନେଇ ଏଇକ୍ଷଣି ଆସିବ । ତମ ପ୍ରାଣରେ ଆଜ ଆଶା ନାହିଁ ।"

ଗଧିଆ ଏତକ ଶୁଣିଲାକ୍ଷଣି ପ୍ରାଣଭୟରେ ବଣ ଭିତରେ ଯାଇ ଲୁଚିଲା ।

ବିଲୁଆ ବୁଦ୍ଧିବଳରେ ସମସ୍ତଙ୍କୁ ଠକ ଏକୁଟିଆ ହରିଣର ମାଂସତକ ନିଶ୍ଚିନ୍ତରେ ଖାଇଲା ।

## ପ୍ରଶ୍ନ

୧ । ହରିଣକୁ ମରାଇବା ପାଇଁ ବିଲୁଆ କ ବୁଦ୍ଧି କଲା ?

୨ । ମୂଷା ଏଥିପାଇଁ କ ସାହାଯ୍ୟ କରିଥିଲା ?

୩ । ବିଲୁଆ କ କୌଶଳରେ ସମସ୍ତଙ୍କୁ ଠକ ଏକା ସବୁ ମାଂସ ଖାଇଲା ?

୪ । ବୁଦ୍ଧି ବଡ଼ କ ବଳ ବଡ଼ ?

---

## ପରବୁଦ୍ଧିରେ ଚଳ ନାହିଁ

ଗୋଟିଏ ଗାଁରେ ଜଣେ ତନ୍ତୀ ଥିଲା । ଘରେ ତାର ସ୍ତ୍ରୀ ଓ ଗୋଟିଏ ପୁଅ । ତନ୍ତୀ ହାଟରୁ ସୂତା କଣିଆଣି ଲୁଗା ବୁଣେ । ଲୁଗାବୁଣା ସରିଲେ ତାକୁ ନେଇ ହାଟରେ ବିକେ । ଏଥିରେ ଯାହା ଲାଭ ହୁଏ, ସେଥିରେ କୁଟୁମ୍ବ ଚଳେ । ତନ୍ତୀଆଣୀ ଲୁଗା-ବୁଣାରେ ସ୍ୱାମୀକୁ ଅନେକ ସାହାଯ୍ୟ କରେ ।

ଦିନେ ତନ୍ତୀ ଲୁଗା ବୁଣୁ ବୁଣୁ ହଠାତ୍ ତନ୍ତର ଖଣ୍ଡେ କାଠ ଭାଙ୍ଗିଗଲା । ଲୁଗାବୁଣା ବନ୍ଦ କରିବାକୁ ପଡ଼ିଲା । ତନ୍ତୀ ବଢ଼େଇ ପାଖକୁ ଯାଇ କହିଲା—"ଭାଇ, ମୋ ତନ୍ତଟା ସଜାଡ଼ି ନ ଦେଲେ ଚଳିବ ନାହିଁ । ଏବେ ମୋ ହାତ ବନ୍ଦ । ଶୀଘ୍ର ତନ୍ତଟି ମରାମତି ନ ହେଲେ ମୋ କୁଟୁମ୍ବ ଉପାସ ରହିବେ ।

ବଢ଼େଇ ତନ୍ତକୁ ପରୀକ୍ଷା କରି କହିଲା, "ମୁଁ ମରାମତି କରିଦେବି କିନ୍ତୁ ଏଥିପାଇଁ ଖଣ୍ଡିଏ ଭଲକାଠ ଦରକାର । ମୋ ପାଖରେ କାଠ ନାହିଁ । ତୁ ଖଣ୍ଡିଏ କାଠ ଦେଲେ ତନ୍ତଟି ଶୀଘ୍ର ମରାମତି କରିଦେବି ।"

ତା ଆରଦିନ ସକାଳୁ ତନ୍ତୀ କୁରହାଡ଼ଟି ଧରି କାଠପାଇଁ ବଣକୁ ବାହାରିଲା । ବଣ ଭିତରେ ଖୋଜି ଖୋଜି ଗୋଟିଏ ଗଛ ହାଣିବାକୁ ସ୍ଥିର କଲା । ସେ ଗଛମୂଳରେ ଦୁଇଚୋଟ ମାରିଛି କି ନାହିଁ, ଏହି ସମୟରେ ଗୋଟିଏ ପ୍ରକାଣ୍ଡ ବ୍ରହ୍ମଦୈତ୍ୟ ଗଛରୁ ବାହାରି ପଡ଼ିଲା । ତାର ଦେହଟି ପାଞ୍ଚ ହାତ ଉଚ୍ଚ ହେବ । ଗୋଡ଼ ହାତ ଲମ୍ବା ଲମ୍ବା । ତାକୁ ଦେଖିବାକ୍ଷଣି ତନ୍ତୀର ଭାରି ଭୟ ହୋଇଗଲା । କିନ୍ତୁ ସେ ମନରେ ସାହସ ବାନ୍ଧି ତାକୁ ଚାହିଁ ରହିଲା । ବ୍ରହ୍ମଦୈତ୍ୟ କହିଲା, "ତୁ ଏ ଗଛ କାହିଁକି ହାଣୁଛୁ ?" ତନ୍ତୀ କହିଲା, "ମୋର ତନ୍ତଟି ଭାଙ୍ଗିଯାଇଛି । ଏ ଗଛଟି କାଟି ନେଇ ବଢ଼େଇକୁ ଦେଲେ ସେ ତାକୁ ମରାମତି କରିଦେବ ।"

ଏହା କହି ସେ ପୁଣି ଗଛକୁ ହାଣିବାକୁ ବସିଲା । ତହୁଁ ବ୍ରହ୍ମଦୈତ୍ୟ ତାକୁ କହିଲା, "ଦେଖ, ତୁ ଏ ଗଛଟି ଛାଡ଼ିଦେଇ ଆଉ ଗୋଟିଏ ଗଛ ହାଣ । ଏ ଗଛରେ ମୁଁ ଅନେକ କାଳୁ

ରହିଛି । ତୁ ଏ ଗଛକୁ ନ ହାଣିଲେ, ତୋର ଯାହା ଇଚ୍ଛା ମୁଁ ତାହା ଦେବି ।”

ଚନ୍ଦ୍ରୀ ଭାବିଲା, ମୁଁ ଯାହା ମାଗିବି ତା ଦେବ ବୋଲି ଏ ବ୍ରହ୍ମଦୈତ୍ୟ କହୁଛି । ଥରେ ମାଗିଦେଲେ ତ ସରିଗଲା । ଭଲକରି ବୁଝି ବିଚାରି ମାଗିବା ଦରକାର ।

ଏହାପରି ଭାବି ସେ କହିଲା, “ଆଚ୍ଛା, ମୁଁ ଘରକୁ ଯାଉଛି । ମୋର ବନ୍ଧୁ ବାନ୍ଧବ, ସ୍ତ୍ରୀ ପିଲା ଅଛନ୍ତି । ସେମାନଙ୍କୁ ପଚାରି ଯାହା ମାଗିବାର ମାଗିବି ।”

ବ୍ରହ୍ମଦୈତ୍ୟ ଏଥିରେ ରାଜି ହେଲା ।

ଚନ୍ଦ୍ରୀ ଫେରିଗଲା ବେଳକୁ ଗାଆଁ ମୁଣ୍ଡରେ ତାର ସଙ୍ଗାତ ସାଥିରେ ଦେଖାହେଲା । ସଙ୍ଗାତ ପଚାରିଲା “ତୁମେ ପରା କାଠ ଆଣିବାକୁ ଯାଇଥିଲ ? ଖାଲି ଫେରି ଆସିଲ କାହିଁକି ?” ତହୁଁ ଚନ୍ଦ୍ରୀ ତାହାକୁ ବ୍ରହ୍ମଦୈତ୍ୟ କଥା କହିଲା ।

ସବୁ କଥା ଶୁଣି ସଙ୍ଗାତ କହିଲା, “ତୁମ କପାଳ ଭାରି ତେଜ । ଯାଅ, ସେ ବ୍ରହ୍ମଦୈତ୍ୟକୁ କହିବ ତୁମକୁ ରଜା କରିଦେବାକୁ । ତୁମେ ରଜା ହେଲେ ମୋତେ ତୁମର ମନ୍ତ୍ରୀ କରି ରଖିବ ।”

ଚନ୍ଦ୍ରୀ କହିଲା, “ହେଉ, ସେଇ କଥା କହିବି । ତେବେ ଏତେବାଟ ଆସି ଘରକୁ ନ ଯିବି କାହିଁକି ? ଘରିଯାକୁ ମଧ୍ୟ ଏସବୁ କଥା କହିବି ।”

ସଙ୍ଗାତ କହିଲା, “ଭଲ କଥା, ଘରେ ଘରିଯାକୁ ନ କହିବ କାହିଁକି ? ତେବେ ମନେ ରଖିଥାଅ, ନିଶ୍ଚୟ ତୁମେ ରଜା ହେବାପାଇଁ ବ୍ରହ୍ମଦୈତ୍ୟକୁ କହିବ ।”

କିଛି ସମୟ ପରେ ତନ୍ତୀ ଘରେ ପହଞ୍ଚି ଘରଯାକୁ ବ୍ରହ୍ମଦୈତ୍ୟ ବର ଯାଚିଥିବା କଥା କହିଲା । ତା ସଙ୍ଗେ ସଙ୍ଗାତର ପରାମର୍ଶ କଥା ମଧ୍ୟ କହିଲା ।

ସବୁ କଥାଶୁଣି ତନ୍ତୀଆଣୀ ବିରକ୍ତ ହୋଇ କହିଲା, "ତମେ ସଙ୍ଗାତ କଥାରେ ପଡ଼ି କେବେହେଲେ ରଜାହେବାକୁ ଯିବ ନାହିଁ । ଆମେ ଦିହମିହନ୍ତ କରି ଯେଉଁ ଦୁଇପଇସା କମାଉଥାଉଁ ସେଥିରେ ଦୁଃଖେ ସୁଖେ ଚଳିଯାଉଛୁ । ତମେ ଦିନକେ ଖଣ୍ଡିଏ ଲୁଗା ବୁଣୁଛ । ଦୁଇଖଣ୍ଡ ବୁଣିଲେ ତ ଆମର ଘର ଖରଚ ଚଳି ଆହୁରି କେତେ ପଇସା ବଳନ୍ତା ।"

ତନ୍ତୀ କହିଲା, "ସେ କଥା ସତ । ମାତ୍ର ମୁଁ ଜଣେ ମଣିଷ । ଦିନଯାକ ମିହନ୍ତ କରି ଖଣ୍ଡିଏ ଲୁଗା ବୁଣୁଛି । ଦିଖଣ୍ଡ ବୁଣିବି କିପରି ?"

ତନ୍ତୀଆଣୀ—ମୁଁ ସେଇକଥା କହୁଛି । ବ୍ରହ୍ମଦୈତ୍ୟ ଯେବେ ତୁମକୁ ଆଉ ଗୋଟିଏ ମୁଣ୍ଡ ଓ ଆଉ ଯୋଡ଼ାଏ ହାତ ଦିଅନ୍ତା, ତେବେ ତୁମେ ଦୁଇ ମାଗରେ ଲୁଗା ବୁଣିପାରନ୍ତ । ତାହାହେଲେ ଦୁଇଖଣ୍ଡ ଲୁଗା ବୁଣି ନ ହେବ କାହିଁକି ?

ତନ୍ତୀ—ଆଚ୍ଛା, ମୁଁ ରଜା ହେଲେ କ୍ଷତି କଅଣ ? ତୁ ରାଣୀ ହେବୁ, ଆମ ସଙ୍ଗାତ ମନ୍ତ୍ରୀ ହୋଇ ରହିବେ ।

ତନ୍ତୀଆଣୀ—ରଜା ହେବାକୁ କେଉଁ ମନ କରିବ, ନାହିଁ । ରଜା କାମ ଘର ଅଡ଼ୁଆ । ରାଇଜଯାକ ଲୋକଙ୍କ କଥା ବୁଝିବାକୁ ପଡ଼ିବ । ପାଇକମାନଙ୍କ କଥା ନ ରଖିଲେ ସେମାନେ ମାରିପକାଇ ପାରନ୍ତି । ଦେଶରେ ଲୋକେ ଖାଇବାକୁ ନ ପାଇଲେ ତମକୁ ଦୋଷୀ କରିବେ । ହଜାର ହଜାର ଫିକରବାଜରଙ୍କ କଥା ବୁଝିବାକୁ

ପଡ଼ିବ । ପଡ଼ୋଶୀ ରାଜ୍ୟର ରଜା ଯେବେ ଲଢ଼େଇ କରିବାକୁ ଆସିବ ତାଙ୍କ ସାଥିରେ ଲଢ଼ିବାକୁ ହେବ । ଆମର ଏତେ ଅଡ଼ୁଆରେ ପଶିବା ଦରକାର କଅଣ ? ଆମ ଲୁଗାବୁଣା ଭଲ ନା ଆମେ ଭଲ ।

ତନ୍ତୀ ଅନେକ ଭାବିଲା । ସତ କଥା, ରଜା ହେଲେ ଟିକିଏ ଶାନ୍ତି ମିଳିବ ନାହିଁ । ନାନା ଚିନ୍ତାରେ ରାତିରେ ନିଦ ହେବ ନାହିଁ । ସେ ବଣକୁ ଯାଇ ଗଛମୂଳେ ପୁଣି ପହଞ୍ଚିଲା । ବ୍ରହ୍ମଦୈତ୍ୟ କହିଲା, “ତୁ କି ବର ମାଗୁଛୁ ମାଗ ।”



ତନ୍ତୀ କହିଲା, “ମୋତେ ଆଉ ଗୋଟିଏ ମୁଣ୍ଡ ଓ ଆଉ ଯୋଡ଼ିଏ ହାତ ଦେଲେ ହେଲା । ମୋର ଆଉ କିଛି ଲୋଡ଼ା ନାହିଁ ।” ବ୍ରହ୍ମଦୈତ୍ୟ କହିଲା, “ତୋ'ର ଇଚ୍ଛା ପୂର୍ଣ୍ଣ ହେଉ ।”

ସଙ୍ଗେ ସଙ୍ଗେ ତନ୍ତୀର ପଛପଟେ ଆଉ ଗୋଟାଏ ମୁଣ୍ଡ ଓ ଆଉ ଯୋଡ଼ାଏ ହାତ ହୋଇଗଲା । ସେ ଆନନ୍ଦରେ ଗାଁକୁ ବାହାରିଲା ।

ଗାଁମୁଣ୍ଡରେ ପଢ଼ଞ୍ଚିଲା ବେଳକୁ କେତେଗୁଡ଼ାଏ ପିଲା ଖେଳୁଥିଲେ । ସେମାନେ ଦେଖିଲେ ଯେ ଗୋଟାଏ ମଣିଷ ତାଙ୍କ ଆଡ଼କୁ ଆସୁଛି । ତା'ର ଦୁଇଟା ମୁଣ୍ଡ, ଗୁଡ଼ିଏ ଦାନ୍ତ । ସେମାନେ ଭୟରେ ପଳାଇଗଲେ ।

ଗାଁର କେତେକ ଲୋକ ତନ୍ତୀକୁ ଦେଖି ଭାବିଲେ, ଏ ନିଶ୍ଚୟ ଗୋଟାଏ ଅସୁର । ପିଲାମାନଙ୍କୁ ଖାଇବ । ସେମାନେ ତଡ଼ାରେ ପିଟି ତାକୁ ମାରିପକାଇଲେ । ସେ କଅଣ କହୁଥିଲା, ମାତ୍ର ତା କଥା ଶୁଣେ କିଏ ?

ଗୋଳମାଳ ଶୁଣି ତନ୍ତୀଆଣୀ ଦଉଡ଼ି ଆସି ଦେଖିଲା ଯେ ତାର ସ୍ୱାମୀ ମରି ପଡ଼ିଛି, ତା ଦୁଇମୁଣ୍ଡ ଫାଟି ରକ୍ତ ଧାର ଧାର ହୋଇ ବହିଯାଉଛି ।

ସେ ସ୍ୱାମୀର ଏ ଅବସ୍ଥା ଦେଖି କାନ୍ଦି କାନ୍ଦି କହିଲା, "ମୋର ଦୁର୍ବୁଦ୍ଧିରୁ ଏହା ହେଲା ।"

ପ୍ରଶ୍ନ

୧ । ତନ୍ତୀ କାହିଁକି ବଣକୁ କାଠ ହାଣିବାକୁ ଯାଇଥିଲା ?
୨ । ବୃକ୍ଷଦୈତ୍ୟ କାହିଁକି ବର ଦେବାକୁ କହିଲା ?
୩ । ରଜା ହେବାରେ ଅସୁବିଧା କଅଣ ?
୪ । ତୁମକୁ କେହି ଗୋଟିଏ ବର ଯାଚିଲେ ତୁମେ କଅଣ ମାଗିବ?



# ଯମରାଜା

ଥରେ କୌଣସି ସହରର ଗୋଟିଏ ହୋଟେଲରେ ବସି ରାମ, ଶ୍ୟାମ ଓ ହାମ ମଜାଗପ କରୁଥିଲେ । ଏହି ସମୟରେ ଜଣେ ବାବାଜୀ ଦଉଡ଼ି ସେଠାରେ ପହଞ୍ଚିଲେ । ବାବାଜୀ ଯେପରି ବାଘ ମୁହଁରୁ ପଳାଇ ଆସିଲା ପରି ଜଣାଯାଉଥିଲେ । ତିନହେଁ ବାବାଜୀଙ୍କୁ ପଚାରି ଉଠିଲେ, "କ ହୋ ବାବାଜୀ, ଏପରି ହେଉଛ କାହିଁକି ?"

ବାବାଜୀ ତଳେ ବସି ପଡ଼ି ଟିକଏ ସ୍ଥିର ହୋଇ କହିଲେ, "ହେ ହୋ, ମନୁଷ୍ୟ ରକ୍ଷା ପାଇଗଲା । ଆଉ ଟିକଏ ଯାଇଥିଲେ ତ ମୋ କଥା ସରିଥିଲା ।"

ତିନବନ୍ଧୁ ଯାକ କୌଣସି କଥା ବୁଝି ନ ପାରି ପଚାରିଲେ, "କଥାଟା କଅଣ କହ । ଏମିତି ଅଥୟ ହୋଇ କାହିଁକି ଦଉଡ଼ି ଆସିଲ ?"

ବାବାଜୀ—କଅଣ କହିବ ? ଆଜି ଯମରାଜାଙ୍କ ହାବୁଡ଼ରେ ପଡ଼ିଥିଲି । ଆଉ ଟିକଏ ଆଗେଇଥିଲେ ଯମରାଜା ଧରିଥାନ୍ତା । ମୋ ଭାଗ୍ୟ ଭଲ । ଖସି ପଳାଇ ଆସିଲି ।

ତିନହେଁ ହସି ହସି ଗଡ଼ିଗଲେ । ଯମରାଜଙ୍କ କଥା କିଏ ଶୁଣିନାହିଁ ? ନିତି କେତେ ଲୋକ ମରୁଅଛନ୍ତି । ଲୋକେ କହନ୍ତି ଯମରାଜା ସେମାନଙ୍କୁ ନେଇଯାଏ । କିନ୍ତୁ କେହିହେଲେ ସ୍ୱଚକ୍ଷୁରେ ଯମରାଜଙ୍କୁ ଦେଖିନାହିଁ । ଏ ବାବାଜୀ ଯମରାଜାଙ୍କ ହାବୁଡ଼ରେ ପଡ଼ି ଖସି ଅସିଲା କିପରି ?

ଜଣେ ପଚାରିଲା—"ଆଜ୍ଞା, ତମେ କଅଣ ଯମରାଜାଙ୍କୁ ଦେଖିଛ ?"

ବାବାଜୀ—ମୁଁ ଠିକ୍ ଯମରାଜା ଆଗରେ ପଡ଼ନ୍ତି ଯାଇଥିଲି। ମୋତେ ଧରି ପକାଇଥାନ୍ତା। ସେଇଠି ସେ ବସିଛି। ଆଉ ଟିକଏ ଯାଇଥିଲେ ନିଶ୍ଚେ ମୋତେ ଧରି ପକାଇଥାନ୍ତା।

ତିନିଜଣଯାକ କହିଲେ—ତେବେ ବାବାଜୀ ମହାପ୍ରଭୁ,ଯମରାଜା କେଉଁଠି ଅଛନ୍ତି, କୁହ ଆମେ ଯାଇ ଦେଖି ଆସିବୁ।

ବାବାଜୀ—ତମର କଣ ପ୍ରାଣକୁ ମାୟା ନାହିଁ ନା କଅଣ? ଯମରାଜା ପାଖକୁ ବଳେ ବଳେ ଯାଇ ଧରା ଦେବାକୁ ବସିଛ?

ରାମ—ଆଜ୍ଞା, ଆମକୁ ଯମରାଜାର ଠିକଣାଟା କୁହ। ଆଜଯାଏ କେହି ଯମରାଜାକୁ ଆଖିରେ ଦେଖିନାହିଁ। ଥରେ ଦେଖି ଆସିବା।

ବାବାଜୀ—ତୁମକୁ ଦେଖିଲେ ସେ ଛାଡ଼ିବାର ଆଶା ନାହିଁ। ଆଉ ଫେରିବ ନାହିଁ? ମୋ କଥା ମାନ। ଯମରାଜା ପାଖକୁ ଯାଅ ନାହିଁ।

ତିନିଜଣଯାକ ଜିଦ୍ କଲେ,ଯମରାଜା କେଉଁଠି ଅଛନ୍ତି କହ। ଶେଷରେ ବାବାଜୀ କହିଲେ—"ଏଇବାଟେ ଦୁଇକୋଶ ଚାଲିଗଲେ ଗୋଟିଏ ଘୋଟ ବଣ ପଡ଼ିବ। ସେଇ ବଣ ଭିତରେ ବାଟଠାରୁ ଅଳ୍ପ ଦୂର଼ ଗୋଟାଏ ବଡ଼ ଆମ୍ବଗଛ ଅଛି। ତାହାରି ମୂଳେ ଯମରାଜା ବସିଛନ୍ତି। ସାବଧାନ, ଦୂରରୁ ଦେଖି ପଳାଇ ଆସିବ। ପାଖକୁ ଗଲେ ଆଉ ରକ୍ଷା ନାହିଁ।"

ତିନିହେଁ ଯାକ ଏକଥା ଶୁଣି ସେହି ବାଟେ ଚାଲିଲେ। ପ୍ରାୟ ଦୁଇ ତିନି ଘଣ୍ଟାପରେ ସେମାନେ ବାଟଧାରରେ ଗୋଟିଏ ଘୋଟ ବଣ ଦେଖିବାକୁ ପାଇଲେ। ସେମାନେ କିଛିଦୂର ବଣ ଭିତରକୁ ଯାଇ ଦେଖିଲେ ଯେ ଗୋଟାଏ ବଡ଼ ଆମ୍ବଗଛ ତଳେ ଅନେକ ସୁନା ମୋହର ଜମା ହୋଇଛି। ସେମାନଙ୍କ ଆନନ୍ଦ ଦେଖେ କିଏ?

ସମସ୍ତେ ବସି ବିଚାର କଲେ, "କପର ଏସବୁ ମୋହର ଘରକୁ ନେବା । ଦିନରେ ନେଇଗଲେ ଲୋକେ ଦେଖିପାରିବେ ।"

ଶେଷରେ ସ୍ଥିରହେଲା ଯେ ରାତିହେଲେ ସବୁ ସମାନଭାବରେ ବାଣ୍ଟି ଘରକୁ ନେଇଯିବେ ।

ରାମ କହିଲା, "ଆମ ଭିତରୁ ଜଣେ ସହରକୁ ଯାଇ ଖାଇବା ପିଇବା ଜିନିଷ କିଣିଆଣୁ । ଆଉ ଦୁଇଜଣ ମୋହରଯାକ ଜଗି-ବସିବେ । ଖାଇପିଇ ନିଶ୍ଚିନ୍ତ ହୋଇ ରାତି ଅଧଯାଏ ଏଠି ରହିବା । ରାତି ନିଶୂନ ହେଲେ ମୋହର ଧନ ବାଣ୍ଟିଯିବା ।"

କଥାଟା ସମସ୍ତଙ୍କ ମନକୁ ପାଇଲା । କିନ୍ତୁ ସୁନା ମୋହର ଛାଡ଼ି ସହରକୁ ଯିବାକୁ କାହାରି ଇଚ୍ଛା ନ ଥାଏ । ପ୍ରତ୍ୟେକର ସନ୍ଦେହ ହେଉଥାଏ ଯେ ସହରକୁ ଗଲେ ଆଉ ଦୁହେଁ ମୋହର ନେଇ ପଳାଇବେ ।

ଶେଷକୁ ଗୁଳା ପଡ଼ିଲା । ରାମ ସହରକୁ କିଛି ଭଲ ଖାଇବା ଜିନିଷ ଓ ମଦ ଆଣିବାକୁ ଗଲା ।

ରାମ ବିଚାର କଲା—ମୁଁ ଯେବେ କୌଣସି ଉପାୟରେ ସେ ଦୁହିଁଙ୍କୁ ମାରିପକାଏ, ତେବେ ସବୁଯାକ ସୁନା ମୋର ହେବ ।

ଏହାପରେ ରାମ ସେ ବଜାରରୁ କିଛି ଖାଇବା ଜିନିଷ ଓ ଦୁଇ ବୋତଲ ମଦ କିଣିଲା । କିଛି ବିଷ ଆଣି ପ୍ରତି ବୋତଲରେ ମିଶାଇଦେଲା ।

ଏଣେ ଦାମ ଓ ଶ୍ୟାମ ଗଛମୂଳେ ସୁନା ମୋହରକୁ ଜଗି ବିଚାର କଲେ—ରାମକୁ ମାରିଦେଲେ ଆମ ଭାଗରେ ବେଶି ସୁନା ପଡ଼ିବ ।

ଦୁହେଁଯାକ ସ୍ଥିର କଲେ ଯେ ରାମ ସହରରୁ ଫେରିଲେ ଦୁହେଁଯାକ ମିଶି ତାକୁ ମାରି ପକାଇବେ ।

କିଛି ସମୟ ପରେ ରାମ ଖାଇବା ଜିନଷ ଓ ମଦ ବୋତଲ ଘେନି ଗଛମୂଳେ ପହଞ୍ଚିଲା । ତାର ସାଥିଦୁହେଁ ହଠାତ୍ ତାକୁ ମାଡ଼ି ବସି ପିଟିବାକୁ ଲାଗିଲେ । ଦୁଇଜଣଙ୍କ ସାଥିରେ ସେ ଜଣେ ଅବା କଅଣ କରିପାରିବ ? କିଛି ସମୟ ପରେ ତାର ପ୍ରାଣ ବାହାରିଗଲା




ଦାମ ଭାବୁଥାଏ—କପରି ଶ୍ୟାମକୁ ମାରିପାରନ୍ତି କି ସବୁତକ ସୁନା ମୋର ହୁଅନ୍ତା । ସେହିପରି ଶ୍ୟାମ ଭାବୁଥାଏ—କପରି ଦାମକୁ ମାରି ପକାନ୍ତି କି ସୁନାତକ ମୁଁ ଏକୁଟିଆ ନଅନ୍ତି । କିନ୍ତୁ କେହି ଆପଣା କଥା ପଦାରେ ପକାଇବାକୁ ସାହସ କରୁନଥାନ୍ତି ।

ଦୁହେଁ ଯାକ ଖାଇସାରି ମଦ ପିଇଲେ । ଅଳ୍ପ ସମୟ ଭିତରେ ବିଷଯୋଗୁଁ ଦୁହିଁଙ୍କର ପ୍ରାଣ ଗ୍ଲଡ଼ିଗଲା ।

ସମସ୍ତେ ସେଇ ଆମ୍ବଗଛ ମୂଳେ ମରି ପଡ଼ି ରହିଲେ ।

ପ୍ରଶ୍ନ

୧ । ବାବାଜୀ କାହାକୁ ଯମରାଜା ବୋଲି କହିଲେ ?

୨ । ରାମ, ଦାମ ଓ ଶ୍ୟାମ କାହିଁକି ସଙ୍ଗେ ସଙ୍ଗେ ମୋହର ବାଣ୍ଟି ନେଇ ନ ଥିଲେ ?

୩ । ରାମ କପରି ମଲା ?

୪ । କଅଣ କରିଥିଲେ ସେମାନେ ମରି ନ ଥାନ୍ତେ ?

---

## ସାଧୁ ବେଶରେ ଠକ

ଅନେକ ବର୍ଷ ତଳେ କାଶୀ ରାଜ୍ୟରେ ବ୍ରହ୍ମଦତ୍ତ ରାଜାକୁ କରୁଥିଲେ । ସେହି ସମୟର କଥା । କାଶୀ ରାଜ୍ୟକୁ ଲାଗି ମଗଧ ରାଜ୍ୟ । ଏହି ମଗଧରାଜ୍ୟର ଗୋଟିଏ ଗ୍ରାମରେ ଜଣେ ଜମିଦାର ଥିଲେ । ଜମିଦାର ବଡ଼ ଧାର୍ମିକ ଲୋକ । ବ୍ରାହ୍ମଣ ବୈଷ୍ଣବଙ୍କଠାରେ ତାଙ୍କର ଘାରି ଭକ୍ତି । ତାଙ୍କର ବିଶ୍ୱାସ— ଏମାନଙ୍କୁ ଭକ୍ତି କଲେ ପୁଣ୍ୟ ମିଳେ ।

ଥରେ ସେହି ଗ୍ରାମରେ ଜଣେ ସନ୍ନ୍ୟାସୀ ଆସି ପହଞ୍ଚିଲେ । ସନ୍ନ୍ୟାସୀ ଖଣ୍ଡିଏ ଗେରୁଆ ଲୁଗା ପିନ୍ଧିଥାନ୍ତି । ମୁଣ୍ଡରେ ଜଟା, ମୁହଁରେ ଦାଢ଼ି, ଦେହଯାକ ପାଉଁଶ ବୋଳା ହୋଇଥାଏ ।

ସନ୍ନ୍ୟାସୀଙ୍କୁ ଦେଖି ଜମିଦାର ତାଙ୍କ ପାଦତଳେ ପଡ଼ି ପଦରଜ ମୁଣ୍ଡରେ ମାଇଲେ । ସନ୍ନ୍ୟାସୀ ମଧ୍ୟ ତାଙ୍କୁ ଆଶୀର୍ବାଦ

କଲେ । ଜମିଦାର ତାଙ୍କୁ ବହୁତ ଅନୁରୋଧ କରି କହିଲେ— "ଆପଣ ଏ ଗାଁରେ ପାଦ ଦେଇଛନ୍ତି, ଏ ଆମର ଭାଗ୍ୟ । ଏଠାରେ କିଛି ଦିନ ରହି ଆମକୁ କିଛି ଧର୍ମକଥା କହନ୍ତୁ ।"

ସନ୍ନ୍ୟାସୀ ପ୍ରଥମେ ରାଜି ନ ହୋଇ କହିଲେ, "ସନ୍ୟାସୀ ପକ୍ଷରେ କୌଣସି ଗୋଟିଏ ଜାଗାରେ ବେଶି ଦିନ ରହିବା ଠିକ୍ ନୁହେଁ । ଗ୍ରାମରୁ ଗ୍ରାମକୁ ବୁଲି ହରିନାମ କରିବା ମୋର କାମ ।"

କିନ୍ତୁ ଜମିଦାର ବହୁତ କରି କହିବାରୁ ଶେଷରେ ସନ୍ନ୍ୟାସୀ ସେଠାରେ କିଛିଦିନ ରହିବାକୁ ରାଜି ହେଲେ । ଜମିଦାରଙ୍କର ଗୋଟିଏ ଦେବମନ୍ଦିର ଥିଲା । ସେହି ମନ୍ଦିର ମଣ୍ଡପରେ ସନ୍ନ୍ୟାସୀ ରହିଲେ । ଦୁଇବେଳା ଠାକୁରଙ୍କ ପ୍ରସାଦ ଖାଇ ସନ୍ନ୍ୟାସୀ ମଣ୍ଡପରେ ବସି ଧର୍ମଶାସ୍ତ୍ର ପଢ଼ନ୍ତି । ଗାଁର ଲୋକେ ଆସି ତାଙ୍କଠାରୁ ଧର୍ମ ଉପଦେଶ ଶୁଣନ୍ତି ।

ଏହିପରି କିଛିଦିନ ଗଲା । ଜମିଦାର ଦେଖିଲେ ଯେ ମଣ୍ଡପରେ ସନ୍ନ୍ୟସୀଙ୍କର ରହିବାର ଅସୁବିଧା ହେଉଛି । ସେ ଦେଉଳ ବେଢ଼ା ଭିତରେ ତାଙ୍କ ପାଇଁ ଗୋଟିଏ ଘର ତିଆରି କରାଇଦେଲେ । ତାଙ୍କର ଅସୁବିଧା ସୁବିଧା ବୁଝିବା ପାଇଁ ଜଣେ ଚାକର ଖଞ୍ଜା କରିଦେଲେ ।

ପ୍ରତିଦିନ ଜମିଦାର ଓ ତାଙ୍କ ସ୍ତ୍ରୀ ସନ୍ନ୍ୟାସୀଙ୍କ ପାଖକୁ ଆସି ତାଙ୍କର ପାଦସେବା କରନ୍ତି । ବେଳେ ବେଳେ ସନ୍ନ୍ୟାସୀ ସେମାନଙ୍କୁ ଗୀତା, ଭାଗବତ ପ୍ରଭୃତି ଧର୍ମଶାସ୍ତ୍ର ଶୁଣାନ୍ତି ।

ଚାରିଁ ପାଞ୍ଚ ବର୍ଷେ ଚାଲିଗଲା । ସନ୍ନ୍ୟାସୀ ମଝିରେ ମଝିରେ ଚାଲିଯିବାକୁ କହନ୍ତି । କିନ୍ତୁ ଜମିଦାର ତାଙ୍କୁ ବହୁତ ଖୋସାମତି କରି ତାଙ୍କ ଯିବା ବନ୍ଦ କରାନ୍ତି ।

ଏ ସମୟରେ ରାଜ୍ୟରେ ଦୁର୍ଭିକ୍ଷ ପଡ଼ିଲା । ଧାନ ଚାଉଳର ଦର ଖୁବ୍ ବଢ଼ିଗଲା । ଲୋକେ ଖାଇବାକୁ ନ ପାଇ ଚୋରି ଡକାୟତି କରିବାକୁ ଲାଗିଲେ ।

ଜମିଦାରଙ୍କର ବହୁତ ଟଙ୍କା କଉଡ଼ି ଥିଲା । ଧାନ ଚାଉଳ ବିକି ସେ ଆହୁରି ଟଙ୍କା ଜମାଇଲେ । ଏବେ ତାଙ୍କର ଚିନ୍ତା ବଢ଼ି-ଗଲା । ଲୋକେ ଯେପରି ଅଭାବରେ ପଡ଼ିଛନ୍ତି ତାଙ୍କ ଘରେ ଚୋରି ଡକାୟତି କରିବା ଅସମ୍ଭବ ନୁହେଁ । କିପରି ତାଙ୍କର ଧନ ନିରାପଦରେ ରହିବ ସେକଥା ସେ ଦିନରାତି ଭାବିବାକୁ ଲାଗିଲେ ।

ବହୁତ ଭାବିଚିନ୍ତି ସେ ସ୍ଥିର କଲେ—ଏ ସନ୍ନ୍ୟାସୀ ବଡ଼ ନିର୍ଲୋଭ ଲୋକ । ସଂସାରର ସବୁ ଛାଡ଼ିଦେଇ ସନ୍ନ୍ୟାସୀ ହୋଇଛନ୍ତି । କେବଳ ମୋ ଅନୁରୋଧ ଏଡ଼ି ନପାରି ଏଠାରେ ରହିଯାଇଛନ୍ତି । ଯାହାର ନିଜ ଘରଦ୍ୱାରକୁ ସୁଦ୍ଧା ଲୋଭ ନାହିଁ, ସେ କଅଣ କେବେହେଲେ ପର ଧନକୁ ଛୁଇଁବେ ? ସନ୍ନ୍ୟାସୀଙ୍କ ପାଖରେ ସବୁ ଟଙ୍କା ସୁନା ରଖିଦେଲେ ଲୋକେ କେହି ଜାଣି-ପାରିବେ ନାହିଁ । ଚୋର ଡକେଇତମାନେ ସ୍ୱପ୍ନରେ ସୁଦ୍ଧା ଭାବିବେ ନାହିଁ ଯେ ବାବାଜୀଙ୍କ କୁଡ଼ିଆରେ ଏତେ ଧନ ଅଛି ।

ଶେଷରେ ଦିନେ ଜମିଦାର ସନ୍ନ୍ୟାସୀଙ୍କୁ ଆପଣା ମନକଥା ଜଣାଇଲେ । ପହିଲେ ପହିଲେ ସନ୍ନ୍ୟାସୀ ରାଜି ହେଉ ନଥିଲେ । ଶେଷକୁ କହିଲେ, "ଆଚ୍ଛା, ମୁଁ ଧନକୁ ଛୁଇଁବି ନାହିଁ । ଟଙ୍କାସୁନା ମୁଁ ତ ଛୁଏଁ ନା, ଏପରି କି ତାକୁ ଛୁଇଁବା ମଧ୍ୟ ପାପ । ତୁମେ ମୋ କୁଡ଼ିଆ ଘରେ ଗାତ କରି ତମର ଧନ ସମ୍ପତ୍ତି ଯାହା ଇଚ୍ଛା ପୋତି ଦେଇଯିବ । କିନ୍ତୁ ମୁଁ ତାକୁ ଛୁଇଁବି ନାହିଁ ।"

ଜମିଦାର ସେଦ୍ଧାପର କଲେ । ସନ୍ନ୍ୟାସୀ ଦେଉଳ ମଣ୍ଡପରେ ଶାସ୍ତ୍ର ପଢ଼ି ଲୋକଙ୍କୁ ଶୁଣାଉଥାଆନ୍ତି । ଏଣେ ଜମିଦାର ଘରୁ ସବୁ ସୁନାରୂପା ନେଇ କୁଡ଼ିଆରେ ଗୋଟିଏ ଗାତକରି ପୋତିଦେଲେ । ସେ ଜାଗା ଉପରେ ସନ୍ନ୍ୟାସୀଙ୍କର କମ୍ବଳ ଓ ହରିଣ ଛାଲ ପଡ଼ିଲା ।

ଜମିଦାର ଭାବିଲେ, ପୃଥିବୀରେ ଏପରି ନିରାପଦ ସ୍ଥାନ ଆଉ ନାହିଁ । ନିଜେ ସନ୍ନ୍ୟାସୀ ଗାତ ଉପରେ ଶୋଇବେ । ଆଉ ଭୟ କଅଣ ?

କ୍ରମେ ସନ୍ନ୍ୟାସୀ ଖାଇବା କମାଇଦେଲେ । ଜମିଦାର ତାଙ୍କ ପାଇଁ ଘିଅଦୁଧରେ ତିଆରି ଭଲ ଭଲ ଜିନିଷ ପଠାନ୍ତି । କିନ୍ତୁ ସନ୍ନ୍ୟାସୀ ତାକୁ ଆଉ ଖାଇଲେ ନାହିଁ । ଜମିଦାର ପାଦତଳେ ପଡ଼ି ପଚାରିଲେ, "ମହାପ୍ରଭୁ, ମୋ ପ୍ରତି କାହିଁକି ରାଗ କରିଛନ୍ତି ? ଆପଣଙ୍କ ଯୋଗ୍ୟ ଖାଦ୍ୟ ହେଉ ନ ଥିବ । ମୋତେ କ୍ଷମାକରି ପ୍ରସାଦ ସେବା କରନ୍ତୁ ।"

ସନ୍ନ୍ୟାସୀ ହସି ହସି କହିଲେ, "ତୋର ବୁଝିବାରେ ଭୁଲ । ମୁଁ ସନ୍ନ୍ୟାସୀ ଲୋକ । ବହୁତ ଦିନୁ ଗୃହସ୍ଥ ଆଶ୍ରମ ଛାଡ଼ିଲିଣି । କେବଳ ତୋର ଭକ୍ତିରେ ରହିଯାଇଛି । ମାତ୍ର ଦୁଧ ଘିଅରେ ପୁଷ୍ଟି ମିଠେଇ ପ୍ରଭୃତି ଖାଇ ମୋର ଭଗବାନଙ୍କଠାରୁ ଧ୍ୟାନ କମି ଆସୁଛି । ସାମାନ୍ୟ ଭାତ ଓ ଟିକିଏ ଶାଗ ହେଲେ ଯଥେଷ୍ଟ ହେବ । ତୁ କଅଣ ମୋତେ ଖାଇବାକୁ ଦେଇ ମୋର ଧର୍ମକାମରେ ବାଧା ଦେବାକୁ ଚାହୁଁ ?"

ଜମିଦାର ପୁଣି ସନ୍ନ୍ୟାସୀଙ୍କ ପାଦତଳେ ପଡ଼ି ବିଦାୟ ହେଲେ ।

ଦିନକୁ ଦିନ ସନ୍ନ୍ୟାସୀଙ୍କ ଦେହ ଶୁଖି ଆସିଲା । ଜମିଦାର ଓ ତାଙ୍କ ସ୍ତ୍ରୀ ଯେତେ ଅନୁରୋଧ କଲେ ମଧ୍ୟ ସନ୍ନ୍ୟାସୀ ଭଲ ଜିନିଷ ଛୁଇଁଲେ ନାହିଁ । ନୂକରଟିକୁ ବିଦାୟ କରିଦେଲେ ।

ଜମିଦାରଙ୍କର ସନ୍ନ୍ୟାସୀଙ୍କ ପ୍ରତି ଭକ୍ତି ଆହୁରି ବଢ଼ିଗଲା ।

ଦିନେ ସନ୍ନ୍ୟାସୀ ଜମିଦାରଙ୍କୁ କହିଲେ, "ବାବା, ମୁଁ ଦେଖୁଛି, ତୋର ଭକ୍ତିରେ ମୁଁ ବାନ୍ଧି ହୋଇ ରହିଯିବି । ତା ହେବ ନାହିଁ । ମୋର ଧର୍ମରେ ବାଧା ଘଟିଲାଣି । ପୁଣି ଏ ସଂସାରଟାଯାକ ଆମର ଘର । ଗୋଟାଏ ଜାଗାରେ ଏତେଦିନ ରହିବା ମୋ ପକ୍ଷରେ ପାପ । ଆଉ ଏଠାରେ ରହିବା ମୋ ପକ୍ଷରେ ସମ୍ଭବ ନୁହେଁ, ମୁଁ କାଲି ସକାଳୁ ଚାଲିଯିବି ।"

ଜମିଦାରଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ଏପରି ସନ୍ନ୍ୟାସୀଙ୍କୁ ଛାଡ଼ିବେ କିପରି ? ଆହା, କି ନିର୍ଲୋଭ ! ସଂସାର ପ୍ରତି ଟିକିଏ ହେଲେ ମାୟା ମମତା ନାହିଁ !

କିନ୍ତୁ କରିବେ କଣ ? ବାଧ କରି ରଖିବେ ବା କିପରି ?

ତଥାପି ଜମିଦାର ତାଙ୍କ ପାଦତଳେ ପଡ଼ି କହିଲେ, "ଆପଣ ମହାପୁରୁଷ । ଆପଣ ଯାହା ଇଚ୍ଛା କରିବେ ତାହା ହେବ । ସେଥିରେ ମୁଁ ବାଧା ଦେବି ନାହିଁ । ଏତିକି ପ୍ରାର୍ଥନା—ଆପଣ ମୋତେ ଦୀକ୍ଷା ଦେଇ ଯାଆନ୍ତୁ ।"

ସନ୍ନ୍ୟାସୀ ଏଥିରେ ରାଜି ହେଲେ । ହୋମ ହେଲା । ସନ୍ନ୍ୟାସୀ ଜମିଦାରଙ୍କୁ ଦୀକ୍ଷା ଦେଇ ଶିଷ୍ୟରୂପେ ଗ୍ରହଣ କଲେ । ଜମିଦାର ଗୋଟିଏ ସୁନାର କମଣ୍ଡଳୁ ଓ ଅନ୍ୟ କେତେକ ଜିନିଷ ଦକ୍ଷିଣାରୂପେ ଦେଲେ । ସନ୍ନ୍ୟାସୀ କିଛି ଗ୍ରହଣ କଲେ ନାହିଁ । ଜମିଦାର କହିଲେ— "ଗୁରୁଦେବ, ଗୁରୁଦକ୍ଷିଣା ଗ୍ରହଣ ନକଲେ ଶିଷ୍ୟର ଅମଙ୍ଗଳ ହୁଏ ।"

ସନ୍ନ୍ୟାସୀ କହିଲେ –"ଠିକ୍ କଥା; କିନ୍ତୁ ଏ ମୂଲ୍ୟବାନ୍ ଜିନିଷ କାହିଁକି ? ଆଚ୍ଛା, ମୁଁ ତୋଠାରୁ ଗୋଟିଏ ହରିଡ଼ା ଦକ୍ଷିଣା ରୂପେ ଗ୍ରହଣ କରିବି ।"

ତାହା ହିଁ ହେଲା । ଜମିଦାର ଦକ୍ଷିଣା ପାଇଁ ଗୋଟିଏ ହରିଡ଼ା ସନ୍ନ୍ୟାସୀଙ୍କ ହାତକୁ ଦେଲେ ।

ତା ଆରଦିନ ସକାଳୁ ସନ୍ନ୍ୟାସୀ ବିଦାୟ ହେବାର କଥା । ଜମିଦାର ସନ୍ନ୍ୟାସୀଙ୍କ ବାଟଖର୍ଚ୍ଚ ପାଇଁ କିଛି ଟଙ୍କା, ଖଣ୍ଡିଏ କମ୍ବଳ ଓ ଅନ୍ୟ କେତେକ ଜିନିଷ ଦେଲେ । କିନ୍ତୁ ସେ କିଛି ମାତ୍ର ନ ନେଇ କହିଲେ, "ଏ ସବୁ ମୋର କଅଣ ହେବ ? ତୀର୍ଥରୁ ତୀର୍ଥ ବୁଲିବା ମୋର କାମ । ଟଙ୍କା କଉଡ଼ି ଯେନି ତୀର୍ଥଯାତ୍ରା କେହି କରେ ?"

ଖାଲି ଏତିକି ନୁହେଁ । ଶୀତଦିନେ ବ୍ୟବହାର କରିବାପାଇଁ ଜମିଦାର ତାଙ୍କୁ ଯେଉଁ କମ୍ବଳଟି ଦେଇଥିଲେ ସେଇଟି ମଧ୍ୟ ସେ ଫେରାଇଦେଇ ଗଲେ ।

ସନ୍ନ୍ୟାସୀ ବିଦାୟ ନେଲେ । ଜମିଦାର କାନ୍ଦି କାନ୍ଦି ତାଙ୍କ ପାଦଧୂଳି ଯେନି ରହିଲେ ।

ସନ୍ନ୍ୟାସୀ କିଛିଦୂର ଯାଇ ପୁଣି ଫେରି ଆସି କହିଲେ, "ବାପା, ଗୋଟାଏ ଭୁଲ ହୋଇଯାଇଥିଲା । ଏଠାରୁ କିଛି ମାତ୍ର ନେବା ପାପ । ମୋର ଜଟା ବାନ୍ଧିବା ପାଇଁ ତୋ କୁଡ଼ିଆର ଗୋଟାଏ କୁଟା ମୋ ମୁଣ୍ଡରେ ରହି ଯାଇଥିଲା, ସେଇଟିକି ଫେରାଇ ଦେବାକୁ ଆସିଲି ।"

ଏହା କହି ସନ୍ନ୍ୟାସୀ ଜଟା ଭିତରୁ ଗୋଟିଏ କୁଟା କାଢ଼ି ଜମିଦାରଙ୍କ ହାତରେ ଦେଲେ ।

ଜମିଦାର ଭାବିଲେ—ଓହୋ, କି ଧର୍ମାତ୍ମା ପୁରୁଷ ପରା କୁଟାଟିଏ ସୁଦ୍ଧା ଛୁଇଁବାକୁ ନାରାଜ !

ସନ୍ୟାସୀ ଚାଲିଗଲେ । ଜମିଦାର ମନଦୁଃଖରେ ଘରକୁ ଆସିଲେ । ଅଳ୍ପ ସମୟ ପରେ ଗ୍ରାମର ଜଣେ ବ୍ୟବସାୟୀ ଜମିଦାର ଘରକୁ ଆସିଲେ । ଜମିଦାରଙ୍କ ମୁହଁ ଶୁଖି ଯାଇଥିବାର ଦେଖି ପଚାରିଲେ, "ଆପଣଙ୍କ ମୁହଁ କାହିଁକି ଏପରି ଦିଶୁଛି ? ମନରେ ସୁଖ ନ ଥିଲା ପରି ଲାଗୁଛି ।"

ଜମିଦାର କହିଲେ, "ଏଠାରେ ଯେଉଁ ସାଧୁ ଥିଲେ, ସେ ଆଜି ବିଦାୟ ନେଇଗଲେ । ମୁଁ କେତେ ସାଧୁ ସନ୍ନ୍ୟାସୀ ଦେଖିଛି । କିନ୍ତୁ ଏପରି ନିର୍ଲୋଭ ସାଧୁ ଦେଖିନାହିଁ । କାହାରଠାରୁ କିଛି ଛୁଇଁବେ ନାହିଁ । ଗଲାବେଳକୁ ତାଙ୍କୁ ବାଟ ଖରଚ ଯାଚିଲି, ନେଲେ ନାହିଁ । ଏପରି କି ମୋ ଘରର କୁଟାଟାଏ ତାଙ୍କ ମୁଣ୍ଡରେ ରହି ଯାଇଥିଲା ବୋଲି ତାକୁ ଫେରାଇ ଦେଇଗଲେ । ଯେଉଁ ଲୁଗା ପିନ୍ଧି, ବାଡ଼ି ଓ କମଣ୍ଡଳୁ ଘେନି ଆସିଥିଲେ ସେତିକି ଘେନି ଚାଲିଗଲେ । ଆହା, ଏପରି ସାଧୁ ଆଉ ଦେଖି ପାରିବି ନାହିଁ ।"

ବେପାରୀ କହିଲେ, "ଆପଣ ତାଙ୍କ ପିନ୍ଧାଲୁଗା, କମଣ୍ଡଳୁ ପ୍ରଭୃତି ଭଲକରି ଦେଖିଛନ୍ତି ତ ?"

ଏକଥା ଶୁଣି ଜମିଦାର ରାଗି ଉଠିଲେ । କହିଲେ – "କଅଣ କହୁଛ ? ଏପରି ମହାପୁରୁଷଙ୍କୁ ସନ୍ଦେହ କରିବା ମଧ୍ୟ ପାପ ।"

ବେପାରୀ—ଯାହାହେଉ, ସନ୍ନ୍ୟାସୀଙ୍କ ରହିବା ଘରଟା ଭଲକରି ଦେଖିଛନ୍ତି ? ସବୁ ଠିକ୍ ଅଛି କି ନା ଦେଖିବା ଉଚିତ ।

ଜମିଦାର ଆହୁରି ବିରକ୍ତ ହୋଇ କହିଲେ, "ନିଜେ ତୁମେ ଠକ ବୋଲି ଦୁନିଆ ଲୋକଙ୍କୁ ଠକ ମଣୁଛ । ଜାଣ, ସେ ମୋର ଗୁରୁଦେବ । ତାଙ୍କ ନିନ୍ଦା ସହି ପାରିବି ନାହିଁ ।"

ବେପାରୀ—ମୁଁ କାହାରି ନିନ୍ଦା କରୁ ନାହିଁ । ସନ୍ନ୍ୟାସୀ ନିର୍ଲୋଭ ହୋଇପାରନ୍ତି । କିନ୍ତୁ ଯେଉଁ ଲୋକ କୁଣ୍ଟା ଖିଅକ ଫେରାଇ ଦେବାକୁ ଆସିପାରେ ତା' ବିଷୟରେ ମୋର ସନ୍ଦେହ ।

ଜମିଦାର ବ୍ୟବସାୟୀ ସହିତ ଆଉ କଥାବାର୍ତ୍ତା ହେଲେନାହିଁ । ବ୍ୟବସାୟୀ ଉଠି ଚାଲିଗଲେ ।

ଜମିଦାର ଗୋଟିଏ କୋଡ଼ି ଧରି ସନ୍ନ୍ୟାସୀଙ୍କ କୁଡ଼ିଆକୁ ଯାଇ ସୁନାରୁପା ପୋତିଥିବା ଜାଗାକୁ ଖୋଳିଲେ । କିଛି ବାହାରିଲା ନାହିଁ । ଜମିଦାରଙ୍କ ଆଖି ଖୋସି ହୋଇଗଲା । ଛାତି ଧଡ଼ପଡ଼ ହେଲା । ଘରଟାଯାକ ଖୋଳିଗଲେ । ସୁନାରୁପାର ଚିହ୍ନ ନାହିଁ ।

ସେ କାନ୍ଦୁଅ ହାତରେ ବେପାରୀ ପାଖକୁ ଦଉଡ଼ି ଯାଇ ସବୁ କଥା କହିଲେ । ତହୁଁ ଦୁହେଁଯାକ ଗୋଟିଏ ଲେଖାଏଁ ଘୋଡ଼ାରେ ବସି ସନ୍ନ୍ୟାସୀଙ୍କୁ ଖୋଜିବାକୁ ବାହାରିଲେ ।

ସେମାନେ ଚାରି ପାଞ୍ଚ କୋଶ ଗଲାପରେ ମଧ୍ୟ ସନ୍ନ୍ୟାସୀଙ୍କର ଦେଖା ପାଇଲେ ନାହିଁ । ଏହି ସମୟରେ ବାଟଠାରୁ କିଛି ଦୂରରେ ଗୋଟିଏ ଭଙ୍ଗା ଦେଉଳରୁ ଶବ୍ଦ ଶୁଣାଗଲା । ଜମିଦାର ଓ ବେପାରୀ ଦୁହେଁ ସେହି ଆଡ଼କୁ ଘୋଡ଼ା ଚଳାଇଲେ ।

ସେଠାରେ ସନ୍ନ୍ୟାସୀ ଗୋଟିଏ କୋଡ଼ି ଧରି ମାଟି ଖୋଳୁଥିବାରୁ ଦେଖାଗଲା । ଦୁହେଁ ଯାଇ ସନ୍ନ୍ୟାସୀଙ୍କୁ ଧରି ପକାଇଲେ । ସେହି ଜାଗାରୁ ଜମିଦାରଙ୍କର ସବୁ ସୁନାରୁପା ମିଳିଲା ।

ସନ୍ନ୍ୟାସୀ ଯେ କପଟ ଜମିଦାରଙ୍କ ଆଖିରେ ଧୂଳି ଦେଇ ତାଙ୍କର ସବୁ ସୁନା ରୂପା ନେଇ ଭଙ୍ଗା ଦେଉଳରେ ପୋତି-ଥିଲେ, ଜଣା ପଡ଼ିଗଲା । ଏହାପରେ ଜମିଦାର ସାବଧାନ ହୋଇ



ଚଳିଲେ । ଖାଲି ଲୋକଙ୍କର ବାହାର ବେଶ ବା କାରବାର ଦେଖି ଆଉ ଭୁଲିଲେ ନାହିଁ ।

## ପ୍ରଶ୍ନ

୧ । ସନ୍ନ୍ୟାସୀଙ୍କ ପ୍ରତି କାହିଁକି ଜମିଦାରଙ୍କର ଏତେ ଭକ୍ତି ହୋଇଥିଲା ?

୨ । ସନ୍ନ୍ୟାସୀ କାହିଁକି କୁଣ୍ଢା ଖଣ୍ଡିକ ଫେରାଇ ଦେବାକୁ ଆସିଲେ ?

୩ । ଜମିଦାରଙ୍କ ମନ କପଟ ବଦଳିଲା ?

୪ । ଏହି ଗଳ୍ପରୁ କଅଣ ଶିଖିଲ ?

# ଜାତି ଲକ୍ଷଣ

ଗୋଟିଏ ବଣରେ ସିଂହଟିଏ ରହୁଥିଲା । ସେ ଥିଲା ବଣର ରାଜା । ସିଂହୀ ତାର ରାଣୀ । ସେ ଦୁହିଁଙ୍କର ଦୁଇଟି ଛୁଆ ହେଲେ । କିଛିଦିନଯାଏ ଛୁଆ ଦୁଇଟି ମା'ଠାରୁ ଦୁଧ ଖାଇଲେ । ଛୁଆଙ୍କର ଆଖି ଫିଟିଲା ।

ସିଂହ ପ୍ରତିଦିନ ବଣରେ ବୁଲି ଜୀବ ମାରି ଆଣେ । ତାକୁ ରାଜା ରାଣୀ ଖାଆନ୍ତି । କଅଁଳ ମାଉଁସ ଛୁଆ ଦୁଇଟିକୁ ଖୁଆନ୍ତି । ଏହିପରି ସୁଖରେ ସେମାନଙ୍କର ଦିନ କଟିଯାଉଥାଏ ।

ଦିନେ ସିଂହ ବଣଯାକ ବୁଲି ବୁଲି କୌଣସି ଶିକାର ପାଇଲା ନାହିଁ । ସେ ନିରାଶ ହୋଇ ବସାକୁ ଫେରୁଥିଲା, ଗୋଟିଏ ବିଲୁଆ ଛୁଆ ଦେଖିଲା । ସେ ତାକୁ ଧରି ପକାଇଲା । ଏତେ ଛୋଟ ଛୁଆଟାକୁ ମାରିବାପାଇଁ ସିଂହର ମନ ହେଲାନାହିଁ । ସେ ତାକୁ ଜୀଅନ୍ତା ଧରି ବସାକୁ ଗଲା । ମନେ ମନେ ଭାବିଲା—ରାଣୀ ଏ ଛୁଆଟିକୁ ମାରି ପିଲାଙ୍କୁ ଖୁଆଇବ ।

ବସାରେ ପହଞ୍ଚି ସିଂହ ତା ସ୍ତ୍ରୀକୁ କହିଲା—'ଆଜି କିଛି ଶିକାର ମିଳିଲା ନାହିଁ । ବିଲୁଆ ଛୁଆଟିଏ ଆଣିଛି । ଏଥିରେ ପିଲାଙ୍କର ଆଜିକ ଚଳିଯିବ । କାଲି ଯେପରି ହେଉ ଗୋଟାଏ ହରିଣ ମାରି ଆଣିବି, ଆମେ ଦୁହେଁ ଖାଇବା ।'

ଜୀଅନ୍ତା ବିଲୁଆଟିକୁ ଦେଖି ସିଂହୀ କହିଲା, 'ଏ ତ ଅତି ଛୋଟ ଛୁଆ । ତାକୁ ତୁମେ ପୁଣି ନ ମାରି ଜୀଅନ୍ତା ଆଣିଛ । ପର ଛୁଆ ହେଲେ ବି ତାକୁ ଦେଖି ଆପଣା ଛୁଆପରି ସ୍ନେହ ହେଉଛି, ମାରିବି କିପରି ? ମୁଁ ଭାବୁଛି, ଏଇଟିକୁ ଆମ ପିଲାଙ୍କ ସାଥିରେ

ପାଳିବା । ଆମର ଦୁଇଟି ପିଲା ଥିଲେ । ଏବେ ମନେ କରିବା ଯେ ତିନୋଟି ହେଲେ ।'

ସେତେବେଳକୁ ସିଂହ ଛୁଆ ଦୁଇଟି ଶୋଇପଡ଼ିଥିଲେ । ସିଂହୀ ବଲୁଆ ଛୁଆଟିକୁ ଟିକିଏ ଦୁଧ ପିଆଇ ସେ ଦୁହିଁଙ୍କ ପାଖେ ଶୁଆଇ ଦେଲା ।

ନିଦ ଭାଙ୍ଗିବାରୁ ସିଂହଛୁଆ ଦୁହେଁ ବଲୁଆ ଛୁଆକୁ ପାଖରେ ଦେଖି ପଚାରିଲେ, "ମା, ଏ କିଏ ? କାହୁଁ ଆସିଲା ?" ସିଂହୀ କହିଲା, "ସେ ପରା ତମର ବଡ଼ ଭାଇ । ବନଦେଶକୁ ପାଠପଢ଼ି ଯାଇଥିଲା । କାଲି ଆସିଛି ।"

ସିଂହ ଛୁଆମାନେ ତାକୁ ଆପଣାର ବଡ଼ଭାଇ ମନେକରି ତା' ସାଥିରେ ଆନନ୍ଦରେ ରହିଲେ । ସିଂହୀ ତିନିଙ୍କୁ ଖୁଆଇପିଆଇ ବଢ଼ାଇଲା । ଛୁଆମାନେ ବଡ଼ ହୋଇଯିବାରୁ ବସାଠାରୁ ଟିକିଏ ଦୂରକୁ ବୁଲିଗଲେ ।

ବନେ ତିନିଭାଇ ଖେଳି ବୁଲୁଥିଲେ, ଏହି ସମୟରେ ଗୋଟିଏ ହାତୀ ପାଖକୁ ଆସିଲା । ସବା ସାନ ଛୁଆଟି କହିଲା, "ଭାଇ, ଆସ, ଏ ହାତୀ ଉପରକୁ ଯାଇ ତା ମୁଣ୍ଡ କଣା କରିଦେବା ।"

ଗୁହୁଁ ଗୁହୁଁ ହୋଇ ଡିଆଁକି ସିଂହଛୁଆ ହାତୀ ଉପରକୁ ଚଢ଼ିଗଲେ । ହାତୀ ତାଙ୍କୁ ଶୁଣ୍ଢରେ ଧରିବାକୁ ବହୁତ ଚେଷ୍ଟାକଲା । ମାତ୍ର ଧରିପାରିଲା ନାହିଁ । ଏଣେ ବଲୁଆ ଲାଞ୍ଜ ଉଡ଼ିକୁ ଜାକି ପଳାଇବାର ବାଟ ଖୋଜିଲା । ସେ ସିଂହଛୁଆଙ୍କୁ ଡାକି କହିଲା, "ଆରେ କି ଦୁଷ୍ଟାମି କରୁଛ ! ସେ ପରା ହାତୀଟାଏ । ଏଡ଼େ ବଡ଼ ଜନ୍ତୁପାଖକୁ ଯାଆନ୍ତି ? ପଳାଇ ଆସ, ଏଠି ବୁଦାଭିତରେ ଲୁଚିଯିବା ମୋ କଥା ମାନ, ନୋହିଲେ ତୁମକୁ ଶୁଣ୍ଢରେ ଧରି ଗୋଡ଼ତଳେ ଦଳିଦେବ ।"

ସିଂହକୁଆମାନେ ବଡ଼ଭାଇର କଥା ନଶୁଣି ହାତୀମୁଣ୍ଡ ଉପରେ ବସି ଦାନ୍ତ ନଖରେ ତାକୁ ଖଣ୍ଡିଆ କରି ପକାଇଲେ । ହାତୀ ଘୁଣ୍ଟିପିଟି ହୋଇ ବଣରେ ଏଣେ ତେଣେ ଦଉଡ଼ୁଥାଏ । ସିଂହକୁଆ ଡାକୁଥାନ୍ତି, ବଡ଼ଭାଇ ଆସ, ଆମ ସାଥିରେ ମିଶିଗଲେ ହାତୀଟାକୁ ମାରି ପକାଇବା । ସେବେଠେବେଲକୁ ବଡ଼ଭାଇ ଗୋଟାଏ ବୁଦାତଳେ ଲୁଚିରହି ସବୁ ଦେଖୁଥାଏ ।



କିଛି ସମୟ ପରେ ହାତୀଟା ଆକୁଳରେ ବଣ ଭିତରକୁ ପଳାଇଗଲା । ସିଂହକୁଆ ଦୁହେଁ ବଡ଼ଭାଇକୁ ଖୋଜି ଆସିଲେ । ସମସ୍ତଙ୍କର ଭେଟ ହେଲା । ସିଂହକୁଆ କହିଲେ, "ତମେ ମୋ କଥା ନ ମାନି ହାତୀକୁ କାମୁଡ଼ିବାକୁ ଯାଇଥିଲ । ହାତୀ ତୁମକୁ ଦଳି ମାରି ଦେଇଥାନ୍ତା । ଆଜି ମାଆ ଆଗେ ଏ କଥା କହିବି ।"

ସିଂହଛୁଆ ତାହାଶୁଣି କହିଲେ, "ଆମେ ବ ମାଆକୁ କହିବୁ ଯେ ତୁମେ କେଡ଼େ ଡରକୁଳା, ହାତୀକୁ ଦେଖି କୁଆଡ଼େ ଲୁଚିଗଲ । ଆମେ ଥାକବାରୁ ହାତୀ ଉପରକୁ ଗଲ ନାହିଁ ।"

ସମସ୍ତେ ବସାରେ ପହଞ୍ଚି ଆପଣା ଆପଣା କଥା ସିଂହୀକୁ କହିଲେ । ଭଲୁଆଛୁଆ କହିଲା "ମାଆ, ଏ ଦୁହେଁ ଯାକ ବଡ଼ ଚଗଲା । ପାହାଡ଼ ପର ଗୋଟିଏ ହାତୀ ମାଡ଼ି ଆସୁଥିଲା । ମୁଁ ତାଙ୍କୁ ଆଗରୁ କହିଲି, ଚାଲ ପଳାଇଯିବା । ସେ କାହିଁକି ମୋ କଥା ଶୁଣନ୍ତେ । ତା ସାଥିରେ ଲଢ଼େଇ କରିବାକୁ ତିଆର । ଆଚ୍ଛା, ହାତୀ ଚକଟି ଦେଇଥିଲେ ଆଉ ତାଙ୍କ ପ୍ରାଣ ରହନ୍ତା ?"

ସିଂହଛୁଆ ଦୁହେଁ ଏକଥା ଶୁଣି କହିଲେ, "ମାଆ, ବଡ଼ଭାଇ ଭାରି ଡରକୁଳା । ତାଙ୍କର ଟିକିଏ ହେଲେ ସାହସ ନାହିଁ । ହାତୀକୁ ଦେଖିଲା କ୍ଷଣି ସେ ଆସି କୁଆଡ଼େ ଲୁଚିଲେ । ଆମେ ସାନ ଦୁ' ଭାଇ ହାତୀ ସାଥିରେ ଲଢ଼ି ତାକୁ ହଟେଇ ଦେଲୁ ।"

କଥାଟା ଭଲୁଆଛୁଆକୁ ବାଧିଲା । ସେ କହିଲା—"ମୁଁ କଅଣ ଡରିକରି ଆସିଲି । ମୋର କଣ ସାହସ ନାହିଁ ? ରୂପରେ କି ଗୁଣରେ କି ବୁଦ୍ଧିରେ ମୁଁ ତୁମଠୁ କାହିଁରେ ଊଣା ? ସାନଭାଇ ହୋଇ ମୋତେ ଅପମାନ ଦେଉଛ । ଏହିକ୍ଷଣି ଇଚ୍ଛାକଲେ ତୁମ ଦୁହିଁଙ୍କୁ ମାରି ପକାଇ ଦେବ ।"

ସିଂହୀ ସବୁ ଶୁଣି ଭଲୁଆଛୁଆକୁ କହିଲା, "ବାପା, ତୁ ସାନଭାଇ ଦୁ'ଟାଙ୍କ କଥାରେ ଏପରି ଚିଡ଼ି ଉଠୁଛୁ କାହିଁକି ?"

ଭଲୁଆଛୁଆ କିନ୍ତୁ ଏଥିରେ ଶାନ୍ତ ହେଲା ନାହିଁ । ସାନଭାଇ ବଡ଼ଭାଇକୁ ଅପମାନ କରି କହିଲେ ସହିବ କିଏ ?

ଶେଷକୁ ସିଂହୀ ଦେଖିଲା ଯେ ଭଲୁଆଛୁଆ ସିଂହଛୁଆ ସାଥିରେ ବଳ କଷିବାକୁ ତିଆର । ତେଣୁ ସେ ଭଲୁଆଛୁଆକୁ ଅଲଗା

କରି ଗୋଟିଏ ଜାଗାକୁ ନେଇ କହିଲା, "ପୁଅ, ଆପଣା ଦେହ ବଳ ସାହସକୁ ବୁଦ୍ଧିଁ କଳ କରିବାକୁ ଚାହାଁର । ତେବେ ମୁଁ କହିଦେଉଛି ଯେ ତୁ ପ୍ରକୃତରେ ଗୋଟିଏ ବିଲୁଆଛୁଆ । ମୁଁ ନିଜ ପିଲାଙ୍କ ସାଥିରେ ତୋତେ ପାଳିଆସିଛି ।' ତୋର ଯେଉଁ କୂଳରେ ଜନ୍ମ ସେ କୂଳରେ କେହି ହାତୀ ମାରିନାହାନ୍ତି କି ମାରି ପାରିବେ ନାହିଁ । ତୁ ରୂପ, ଗୁଣ, ସାହସ, ବୁଦ୍ଧିର ଯେତେ ବଡ଼େଇ କଲେ ବି ସିଂହଛୁଆ ହୋଇ ପାରିବୁ ନାହିଁ । ମୋର ଅବୋଧ ପିଲା ଦୁଇଟି ଆଜିଯାଏ ସେ କଥା ଜାଣି ନ ଥିବାରୁ ତୋତେ ବଡ଼ଭାଇ ବୋଲି ମାନି ଆସିଛନ୍ତି । ଏବେ ଦେଖିଛି – ତୁ ତାଙ୍କ ସାଙ୍ଗରେ କଳି କଲେ ତୋର ପ୍ରାଣ ରହିବ ନାହିଁ । ଖାଲି ବଡ଼ ବଡ଼ କଥା କହିଲେ ଚଳିବ ନାହିଁ । କାମରେ ଦେଖାଇବା ଦରକାର । ତୋର ପ୍ରାଣରକ୍ଷା ପାଇଁ ମୋ କଥା ମାନି ଏଠାରୁ ପଳାଇଯାଅ । ବିଲୁଆ ଦଳରେ ରହି ତୋର ଦିନ କଟାଇ ଦେ । ବୃଥା ତୋର ପ୍ରାଣଗଲେ ମୋ ମନରେ କଷ୍ଟ ହେବ । ମୁଁ ଛାତିରୁ ଦୁଧ ଦେଇ ଆପଣା ପିଲାଟି ପରି ତୋତେ ପାଳି ଆସିଛି । ତୋର ମରଣ ଦେଖି ପାରିବି ନାହିଁ ।"

ଏବେ ବିଲୁଆଛୁଆର ଚେତା ପଶିଲା । ସେ ବୁଝି ପାରିଲା ଯେ ସିଂହଛୁଆମାନଙ୍କ ସାହସ ଓ ବଳରେ ସେ କେଡ଼େ ହୀନ । ସେ ଭୟରେ ଥରି ଥରି ସିଂହୀଠାରୁ ବିଦାୟ ନେଇ ଚାଲିଗଲା ।

ମା ଫେରିବାରୁ ଛୁଆଦୁହେଁ ପଚାରିଲେ, "ମା, ବଡ଼ଭାଇ କୁଆଡ଼େ ଗଲେ ?"

ମାଆ ହସି ହସି କହିଲା - ଆରେ, ବଡ଼ଭାଇ ଯାଇଛନ୍ତି ଯୁଦ୍ଧ କରି । ବଣରେ ଯେତେ ହାତୀ ଅଛନ୍ତି ସମସ୍ତଙ୍କୁ ମାରିଲେ ଫେରି ଆସିବେ ।

ପ୍ରଶ୍ନ

୧ । ବଲୁଆଛୁଆ କପରି ସିଂହଛୁଆଙ୍କ ସାଥିରେ ରହିଲା ?

୨ । ହାତୀକୁ ଦେଖି ବଲୁଆଛୁଆ କଅଣ କଲା ? ସିଂହଛୁଆ ଦୁହେଁ କଅଣ କଲେ ?

୩ । ସିଂହୀ କାହିଁକି ବଲୁଆଛୁଆକୁ ପଳାଇବାକୁ କହିଲା ?

---

## ଛୁଇଁଲେ ସୁନା

ଗୋଟିଏ ରାଜ୍ୟରେ ଜଣେ ରାଜା ଥିଲେ । ତାଙ୍କର ନାଁ ଧନପତି ସିଂହ । ରାଜାଙ୍କର ଟଙ୍କା ସୁନାରେ ଭାରି ଲୋଭ । ପ୍ରଜାଙ୍କ ଉପରେ ନାନା ପ୍ରକାର ଖଜଣା ବସାଇ ଅସୁଲ କରନ୍ତି । ମନ୍ତ୍ରୀଙ୍କ ଉପରେ କଡ଼ା ହୁକୁମ କରିଥାନ୍ତି—ଯେପରି ରାଜ ସରକାରରୁ କିଛି ଖରଚ ନ ହୁଏ । ରାଜଭଣ୍ଡାର ହୋଇଥାଏ ନଅରରେ ଥିବା ଗୋଟିଏ ପକ୍‌କା ଘର ଭିତରେ । ସେଥିରେ ଟଙ୍କା ରହିଥାଏ । ରାଜା ଭଣ୍ଡାରଘରେ ଟଙ୍କା ରଖିବାକୁ ଚାହୁଁ ନ ଥିଲେ । ଟଙ୍କା କିଛି ଜମା ହୋଇଗଲାକ୍ଷଣି ସୁନା କିଣି ଆଣି ଭଣ୍ଡାରରେ ରଖିଦିଅନ୍ତି । ସେ ଘରର ଚାବିକାଠି ଥାଏ—ଖୋଦ୍ ରାଜାଙ୍କ ପାଖରେ ।

ପ୍ରତିଦିନ ଥରେ ଲେଖାଏଁ ଭଣ୍ଡାର ଘରକୁ ରାଜା ଯାଆନ୍ତି । ସେଠାରେ କିଛିବେଳ ବସି ମୋହରଗୁଡ଼ାଏ ଏ ପାଖ ସେ ପାଖ କରନ୍ତି । ତାର ଚକଚକିଆ ହଳଦିଆ ରଙ୍ଗ ଦେଖି ତାଙ୍କ ପେଟ ପୂରିଯାଏ । ଠିକ ଏ ଖରା ସେ ଘର ଭିତରେ ପଡ଼ିଲେ ସୁନାଗୁଡ଼ାକ ଝଲସି ଉଠେ । ସେତେବେଳେ ରାଜାଙ୍କର ଆନନ୍ଦ ଦେଖେ କିଏ ? ସେ ଭାବନ୍ତି—ଆହା, ଏ ଘରର କାନ୍ଥଗୁଡାକ ସୁନାର ହୋଇଥାନ୍ତା କି ?

ଦିନକୁ ଦିନ ରାଜାଙ୍କର ଲୋଭ ବଢ଼ିଲା । ମନ୍ତ୍ରୀ ଯେତେ ଉପାୟ କରି ଟଙ୍କା ଦେଲେ ବି ରାଜାଙ୍କର ମନ ସନ୍ତୁଷ୍ଟ ହୁଏ ନାହିଁ । ତେଣେ ପ୍ରଜାମାନେ ଖଜଣା ଦେଇ ଦେଇ ଥକି ଗଲେଣି । ହେଲେ ସେମାନଙ୍କ କଥା ପଚାରେ କିଏ ?

ରାଜାଙ୍କର ବଗିଚାରେ ସଉକ ଥାଏ । ନଈକୂଳରେ ନଅର ପାଖରେ ବଗିଚାଟିଏ । ସେଥିରେ ନାନା ରକମର ଫୁଲଗଛ ଥାଏ ବେଳ ମିଳିଲେ ରାଜା ବଗିଚାକୁ ଯାଇ ସେଥିରେ କିଛି ସମୟ ବୁଲନ୍ତି । ଫୁଲଗୁଡ଼ିକର ଶୋଭା ଦେଖି ତାଙ୍କର ପେଟ ପୂରିଯାଏ ।

ରାଜାଙ୍କର ଗୋଟିଏ ବୋଲି ଝିଅ । ତା ନାଁଟି ଲକ୍ଷ୍ମୀ । ବୟସ ନଅ ଦଶ ବର୍ଷ ହେବ । ତା ଭଳି ସୁନ୍ଦରୀ ଝିଅଟିଏ ମହୀମଣ୍ଡଳରେ ମିଳିବେ ନାହିଁ । ତାର ମଧୁର କଥା ଶୁଣିବାକୁ, ତା ମୁହଁଟି ଚାହିଁବାକୁ ଶହେ ଭ ଦଣ୍ଡେ ରହିଯିବ । ଲୋକେ କହନ୍ତି, ନିଜେ ଲକ୍ଷ୍ମୀ ଠାକୁରାଣୀ ସେ ! ରାଜାଙ୍କର ଝିଅଟି ପ୍ରତି ସ୍ନେହର ସୀମା ନଥାଏ । ଟିକିଏ ବେଳ ମିଳିଲାକ୍ଷଣି ସେ ଝିଅଟିକୁ କୋଳ କରନ୍ତି; ତା ସାଥିରେ କେତେ ପ୍ରକାର ଗପ କରନ୍ତି ।

ନଅର ଭିତରେ ଗୋଟିଏ ଶ୍ରେଷ୍ଠ ଠାକୁରାଣୀ ଦେଉଳ ଥାଏ । ରାଜା ତାଙ୍କ ସେବା ପୂଜା ପାଇଁ ଅନେକ ଜମି ଖଞ୍ଜା କରି ଦେଇଥାନ୍ତି । ପ୍ରତିଦିନ ସନ୍ଧ୍ୟାବେଳେ ରାଜା ମନ୍ଦିର ଭିତରକୁ ଯାଇ ଠାକୁରାଣୀଙ୍କୁ ଦର୍ଶନ କରନ୍ତି । ସନ୍ଧ୍ୟା ଆଳତି ପରେ ରାଜା ଦେବୀଙ୍କ ପାଖେ ସାଷ୍ଟାଙ୍ଗ ପ୍ରଣାମ କରି କହନ୍ତି, "ମା, ମୋତେ ଦୟାକର । ମୋର ଭଣ୍ଡାର ସୁନାରେ ପୂରିଯାଉ ।"

ଦିନେ ସନ୍ଧ୍ୟାରେ ରାଜା ଠାକୁରାଣୀଙ୍କ ପାଖେ ଦଣ୍ଡପ୍ରଣାମ କରି ଠିଆ ହେଲେ । ତା'ପରେ କହିଲେ, "ମାଆ ମୋତେ ଦୟାକର ।"

ହଠାତ୍ ଠାକୁରାଣୀଙ୍କ ମୁହଁ ଉଜ୍ଜ୍ୱଳ ଦେଖାଗଲା । ତାଙ୍କର ତୁଣ୍ଡରୁ ବାହାରିଲା, "ରାଜା, ମୁଁ ତୋର ଭକ୍ତିରେ ସନ୍ତୁଷ୍ଟ ହୋଇଛି । ତୁ କ'ଣ ବର ମାଗୁଛୁ ମାଗ ।"



ରାଜାଙ୍କ ଆନନ୍ଦ କହିଲେ ନ ସରେ । ସେ ଟିକିଏ ଭାବି ହାତ ଯୋଡ଼ି କହିଲେ, "ମାଆ, ମୋତେ ଏହି ବର ଦିଅ ଯେ ମୁଁ ଯାହା ଛୁଇଁବି ତାହା ସଙ୍ଗେ ସଙ୍ଗେ ସୁନା ହୋଇଯିବ ।"

ଠାକୁରାଣୀ କହିଲେ, "ରାଜା, ତୋର ଇଚ୍ଛାମତେ ବର ମାଗିବାକୁ ତୋତେ କହିଛି । ତୁ ଯାହା ମାଗୁଛୁ ମୁଁ ଦେଇପାରେ; କିନ୍ତୁ ଏ ବର ପାଇଲେ ତୁ ସୁଖଶାନ୍ତିରେ ରହିପାରିବୁ ନାହିଁ । ତେଣୁ ମୁଁ କହୁଛି, ଭଲକରି ଭାବି ଚିନ୍ତି ବର ମାଗ ।"

ରଜା ଭାବିଲେ, ମୁଁ ଯାହା ମାଗିଛି ତାହା ଠିକ୍ । ଏହି ବର ମିଳିଗଲେ ମୋର ନଅର ଗୋଟାକ ସୁନା କରିଦେବି । ମୁଁ ଯେଉଁ ବାଟରେ ଚାଲିଯିବି ସେ ବାଟ ବି ସୁନା ହୋଇଯିବ । ସାରା ପୃଥିବୀର ରାଜାମାନେ ମୋ ପାଦତଳେ ପଡ଼ିବେ । ଯେଉଁ ରାଜାମାନେ ମୋଠାରୁ ଧନୀ ବୋଲି ମୋତେ ଖାତିର କରୁନାହାନ୍ତି ସେମାନେ ମୋ ଗୋଡ଼ତଳେ ମୁଣ୍ଡିଆ ମାରିବେ ।

ସେ କହିଲେ, "ମାଆ, ମୁଁ ବହୁତ ଭାବି-ଚିନ୍ତି ଏଇ ବର ମାଗିଛି । ମୋର ଅନ୍ୟ ବର ମାଗିବାକୁ ନାହିଁ ।"

ଠାକୁରାଣୀ—ହେଉ, ତୋର ଇଚ୍ଛା ଅନୁସାରେ ବର ଦେଉଛି । ସେଥିପାଇଁ ତୋର ଅମଙ୍ଗଳ ହେଲେ ମୋତେ ଦୋଷ ଦେବୁ ନି । କାଲି ସକାଳେ ସୂର୍ଯ୍ୟ ଉଇଁଲା ବେଳୁ ଦେଖିବୁ ତୁ ଯାହା ଛୁଇଁବୁ ତାହା ସୁନା ହୋଇଯିବ ।

ରଜା ପୁଣି ଠାକୁରାଣୀଙ୍କ ପାଦତଳେ ପଡ଼ି ପ୍ରଣାମ କଲେ । ତାଙ୍କ ମନର ଆନନ୍ଦ କହିଲେ ନ ସରେ । ସେ ନଅର ଭିତରକୁ ଗଲେ । ମାତ୍ର ଠାକୁରାଣୀଙ୍କ ବରର ଫଳ ଜାଣିବା ପାଇଁ ତାଙ୍କ ମନ ଅଥୟ ହେଉଥାଏ । ସେ ଖାଇପିଇ ଶୋଇବାକୁ ଗଲେ, ମାତ୍ର ଆଖିକି ନିଦ ଆସିଲା ନାହିଁ । ତାଙ୍କୁ ସେ ରାତିଟା ଭାରି ଲମ୍ବା ବୋଧ ହେଲା । ଥରକୁ ଥର ବାହାରକୁ ଆସି ବୁଲୁଥାନ୍ତି । ଭାବୁଥାନ୍ତି—ଏ ରାତିଟା କଅଣ ଆଉ ପାହିବ ନାହିଁ ? ଶେଷକୁ କୁଆଁଳିଆ ଦେଖାଗଲା: କୁକୁଡ଼ାମାନେ ରାବିଲେ । ରଜା ନିତ୍ୟକର୍ମ ସାରିଦେଲେ । ଟିକିଏ ବାହାରକୁ ଯାଉଥାନ୍ତି, ଟିକିଏ ଭିତରକୁ ଆସୁଥାନ୍ତି । ଭାବିଲେ—ସୂର୍ଯ୍ୟ ଉଇଁବାକୁ ଏତେ ଡେରି ହେଉଛି କାହିଁକି ?

ପୂର୍ବ ଦିଗଟା ନାଲି ହୋଇଆସିଲା । ରାଜା କହିଲେ— 'ଏଇ ତ ସୂର୍ଯ୍ୟ ଉଇଁ ଆସିଲେଣି । ଯାଏଁ, ଆଗ ଘରେ ପଡ଼ିଥିବା ଖଟ ଚଉକି ପ୍ରଭୃତି ଛୁଇଁ ସୁନା କରିଦିଏ ।'

ରାଜା ଖଟକୁ ଛୁଇଁ ଦେଇ ଚାହିଁଲେ । କାହିଁ କିଛି ତ ବଦଳିଲା ନାହିଁ । ଯେଉଁ ଶିଶୁକାଠର ଖଟ ସେଇଆ ରହିଛି । ତାଙ୍କ ମନରେ ସନ୍ଦେହ ହେଲା । ଠାକୁରାଣୀ କଅଣ ତାଙ୍କୁ ମିଛରେ ଭଣ୍ଡି ଦେଲେ କି ?

ସେ ଆଉଥରେ ଥରେ ଛୁଇଁ ଅପେକ୍ଷା କଲେ । ଅଳ୍ପ ସମୟ ପରେ ଖଟଟା ଆସ୍ତେ ଆସ୍ତେ ହଳଦି ବର୍ଣ୍ଣ ଧରି ଆସିଲା । ଆଉ କିଛି ସମୟ ପରେ ଅସଲ ସୁନାର ଖଟ ହୋଇଗଲା । ସେତେବେଳକୁ ସୂର୍ଯ୍ୟ ଉଇଁ ସାରିଲେଣି । ରାଜାଙ୍କର ପୂରା ବିଶ୍ୱାସ ହେଉ ନଥାଏ । ଭଲକରି ଦେଖିବା ପାଇଁ ସେ ଗୋଟାଏ ଝରକା ଖୋଲିଦେଲେ । ଖରା ଆସି ଖଟ ଉପରେ ପଡ଼ିଲା । ରାଜା ଦେଖିଲେ ସୁନାର ଖଟ ଚକ୍ ଚକ୍ କରୁଛି । ଆଉ ତାଙ୍କର ସନ୍ଦେହ ରହିଲା ନାହିଁ । ଠାକୁରାଣୀଙ୍କ ବରର ଫଳ ମିଳିଲା ।

ରାଜା ନଅରଯାକ ଘର ବାହାର ବୁଲି ସବୁ ଜିନିଷ ଛୁଇଁଗଲେ । ସଙ୍ଗେ ସଙ୍ଗେ ସେ ସବୁ ସୁନା ହୋଇଗଲା । ଘରମାନଙ୍କର କାନ୍ଥ, ଚଟାଣ ପ୍ରଭୃତି ମଧ୍ୟ ବାଦ ପଡ଼ିଲା ନାହିଁ ।

ଏହି ସମୟରେ ରାଜାଙ୍କର ଜଣେ ଚାକର ଆସି କହିଲା, 'ମହାରାଜ, ଆପଣଙ୍କ ଜଳଖିଆ ତିଆରି ହୋଇ ସାରିଲାଣି ।' କିନ୍ତୁ ରାଜା ବେଶିକ ଶୋଷ ଭୁଲି ଯାଇଛନ୍ତି । ସେ ଗୋଟିକ ପରେ ଗୋଟିଏ ଜିନିଷ ଛୁଇଁଯିବାରେ ଲାଗିଛନ୍ତି । ଚାକରକୁ ହୁକୁମ ଦେଲେ, "ଆଜ ଖାଇବାରେ ଡେରି ହେବ ।"

ରାଜା ତାହାପରେ ଗଲେ ବଗିଚାକୁ—ବଗିଚାର ପ୍ରତ୍ୟେକ ଗଛର ଡାଳପତ୍ର ଛୁଇଁଗଲେ । ସେସବୁ ସୁନା ହୋଇଯିବାରୁ ଅତି ବଢ଼ିଆ ଦେଖାଗଲା । ସୁନାର ଗୋଲାପଗଛ, ସେଥିରେ ସୁନାର ଗୋଲାପ ପତ୍ର, ସୁନାର ଗୋଲାପ ଫୁଲ । ସେହିପରି ଭିନ୍ନ ଭିନ୍ନ ଗଛପତ୍ର ସବୁ ସୁନା ।

ଦିନ ଦି ପହର ହୋଇଗଲା । ରାଜାଙ୍କୁ ସେତେବେଳକୁ ଖୁବ୍ ଭୋକ ହେଲାଣି । ହେଉଁ ସେ ଆଜି ସବୁଗଛ ସୁନା କରିଦେବେ ଭାବି ସେ ଖାଇବାକୁ ବାହାରିଲେ । ସୁନାର ଘରେ ସୁନାର ଆସନରେ ବସିଲେ । ଦେହରେ ସୁନାର ପୋଷାକ । ଚାକର ତାଙ୍କ ପାଖରେ କିଛି ଖାଇବା ଜିନିଷ ଓ ଗିଲାସେ ପାଣି ରଖିଦେଲା । ରାଜା ଥାଳରୁ ଖଣ୍ଡିଏ ରୁଟି ଖାଇବା ପାଇଁ ଉଠାଇଲେ । ସଙ୍ଗେ ସଙ୍ଗେ ସେଖଣ୍ଡି ସୁନାର ରୁଟି ହୋଇଗଲା । ସୁନାର ରୁଟିକି କେବେ ଖାଇ ହୁଏ ? ସେ ଟିକିଏ ଚିନ୍ତାରେ ପଡ଼ିଗଲେ । ଗିଲାସକୁ ଧରିଲେ ପିଇବା ପାଇଁ । ଗୁହୁଁ ଗୁହୁଁ ଗିଲାସଟା ସୁନା ହୋଇଗଲା । ସଙ୍ଗେ ସଙ୍ଗେ ଗିଲାସର ପାଣିତକ ମଧ୍ୟ ତରଳ ସୁନା ହୋଇଗଲା । ତାକୁ ପିଇବେ କିପରି ? ଏବେ ତାଙ୍କର ଚିନ୍ତା ବଢ଼ିଗଲା—ନ ଖାଇ ନ ପିଇ ରହିବେ କିପରି ? ଭୋକରେ ପେଟ ଜଳୁଛି, ଶୋଷରେ ତଣ୍ଟି ଶୁଖିଯାଉଛି । ଆଗରେ ଖାଇବା ଓ ପିଇବା ଜିନିଷ । କିନ୍ତୁ ସେ କିଛି ଖାଇ ପାରୁନାହାନ୍ତି କି ପିଇ ପାରୁନାହାନ୍ତି । ଏହାଠାରୁ ବଳି ଦୁଃଖ କଅଣ ଅଛି ?

ଲକ୍ଷ୍ମୀ କୁଆଡ଼େ ବୁଲୁଥିଲା । ସେ ବଗିଚାକୁ ଯାଇ ଦେଖିଲା ଯେ ଗୁଡ଼ାଏ ଗଛର ଡାଳ, ପତ୍ର, ଫୁଲ ସବୁ ହଳଦିଆ ଝକ୍ ଝକ୍ ଦିଶୁଛି । ଗୋଟିଏ ଗୋଲାପ ଫୁଲ ଛିଣ୍ଡାଇବାକୁ ଗଲା । ପାରିଲା ନାହିଁ । ଓଃ, କି ଟାଣ ! ତାକୁ ବଡ଼ ଖରାପ ଲାଗିଲା । ଏ ସବୁ କିଏ ଏପରି କଲା ! ତାକୁ କାନ୍ଦ ମାଡ଼ିଲା ।

ରାଜା କପଡ଼ ଖାଇପିଇ ବଞ୍ଚିବେ, ଏହି କଥା ଭାବୁଥାନ୍ତି । ଏହି ସମୟରେ ଲକ୍ଷ୍ମୀ କାନ୍ଦି କାନ୍ଦି ବାପାଙ୍କ ପାଖକୁ ଦୌଡ଼ି ଆସି କହିଲା, "ବାପା ଆମ ବଗିଚାର ଗଛଗୁଡ଼ାକୁ କିଏ କଣ କରି ଦେଇଛି । ମୁଁ ଗୋଲାପ ଫୁଲ ପାଇଁ ଯାଇଥିଲି । ସବୁ ଗଛପତ୍ର ହଳଦିଆ ଆଉ ଟାଣ ହୋଇଯାଇଛି । ମୁଁ ଫୁଲଟାଏ ଛିଣ୍ଡାଇ ପାରିଲି ନାହିଁ । ଗଛ ସବୁ କିଏ ଏମିତି କରିଦେଲା ?"



ରାଜା କଅଣ କହିବେ ଭାବି ପାରିଲେ ନାହିଁ । ସେ କାନ୍ଦି ପକାଇ ଝିଅକୁ କୋଳକୁନେଇଗଲେ । କିନ୍ତୁ ଏ କଅଣ ? ଲକ୍ଷ୍ମୀ ଯେ ଆଉ ଲକ୍ଷ୍ମୀ ହୋଇନାହିଁ । ହୋଇଯାଇଛି ଗୋଟିଏ

ସୁନାର ପ୍ରତିମା । ତାର ରୂପ ଟିକିଏ ବଦଳି ନାହିଁ । ଆଖିରୁ ଲୁହ ଟୋପାକ ପର୍ଯ୍ୟନ୍ତ ସୁନାର ପାଣି ଟୋପାକ ପରି ତଳ ତଳ ହୋଉଛି ।

ରାଜା ଏହା ଦେଖି ହୋ ହୋ କାନ୍ଦି ଉଠିଲେ । ଶେଷକୁ ଏ କଣ ହେଲା ! ଠାକୁରାଣୀଙ୍କୁ ବର ମାଗିଲାବେଳେ ଏପରି ହେବ ବୋଲି ସେ ମୋଟେ ଭାବି ନ ଥିଲେ । ସେ ଘରଟି ବନ୍ଦକରି ସୁନାର ଲକ୍ଷ୍ମୀକୁ ଧରି ଖାଲି କାନ୍ଦିବାକୁ ଲାଗିଲେ । ନିଜେ ତ ଏହି କଥା କରିଛନ୍ତି, କାହାକୁ କହିବେ, କଅଣ କରିବେ ? ପ୍ରତିକାର କଅଣ ?

ସେ ଆକୁଳ ହୋଇ ଠାକୁରାଣୀଙ୍କ ମନ୍ଦିରକୁ ଧାଇଁଲେ । ତାଙ୍କର ମନେ ହେଲା—ସତେ ଯେପରି ଠାକୁରାଣୀଙ୍କ ମୁହଁରେ ହସ ଫୁଟି ଉଠୁଛି । ରାଜା ଭୂଇଁରେ ଲୋଟିଗଲେ । କହିଲେ, "ମାଆ, ମାଆ, ତୋର ଏ ଅଧମ ପୁଅକୁ ଦୟାକର । ମୋର ବଡ଼ ଭୁଲ ହୋଇଛି । ତୋ ବର ଫେରାଇ ନେ । ନ ହେଲେ ମୋର ପ୍ରାଣ ନେ । ଏ ହୀନ ଜୀବନ ରଖି ଲାଭ ନାହିଁ ।"

ଠାକୁରାଣୀ ହସି ହସି କହିଲେ, "ରାଜା, ମୁଁ ତ ଆଗରୁ କହିଥିଲି ଯେ ଏ ବରଦ୍ୱାରା ତୋର ମଙ୍ଗଳ ହେବ ନି । ତୁ ଜିଦ୍ କରିବାରୁ ତୋ ଇଚ୍ଛାରେ ବର ଦେଇଛି । ଏବେ ତୋର ଦୁଃଖ କଅଣ ?"

ରାଜା କହିଲେ, "ମାଆ, ଦୁନିଆରେ ମୋଠାରୁ ବଳି ଦୁଃଖୀ ନ ଥିବେ । ମୁଁ ଯାହା ଛୁଇଁ ଦେଉଛି, ତାହା ସୁନା ହେଉଛି । ମାତ୍ର ସୁନାର ପିଲାକୁ କି ସ୍ନେହ କରି ହେବ ? ସୁନାର ଫୁଲକୁ ଶୁଙ୍ଘି ହେବ ନା ସୁନାର ପାଣି ପିଇ ହେବ ? ତୋ ବର ମୋର ଅଭିଶାପ ହୋଇଛି । ଯେଉଁ ସୁନା ପାଇଁ ମୁଁ ଅଥୟ ହେଉଥିଲି, ସେଇ ସୁନାକୁ ମୋର ଛୁଇଁବାକୁ ମନ ହେଉନାହିଁ । ମୋତେ ଦୟାକରି ତୋବର ଫେରାଇ ନେ ।"

ଠାକୁରାଣୀ—ମୁଁ ପ୍ରଥମରୁ ମନା କରିଥିଲି; ମୁଁ ଜାଣିଥିଲି ଯେ ଏ ବର ପାଇ ତୁ ଦୁଃଖରେ ପଡ଼ିବୁ । ଏବେ ତୁ ବୁଝିଛୁ, ସୁନା ପୃଥିବୀରେ ବଡ଼ ଜିନିଷ ନୁହେ । ତୁ ଯାଇ ନଦୀରେ ସ୍ନାନ କରି ଆ, ନଦୀରୁ କଳସୀଏ ଜଳ ନେଇ ଯାହା ସବୁ ସୁନା ହୋଇଛି ତା' ଉପରେ ସିଞ୍ଚିଦେ । ତାହାହେଲେ ସବୁ ଜିନିଷ ଯେ ଯାହାର ଆଗ ରୂପ ପାଇବେ । ମନେ ରଖ—ସ୍ନେହ, ଦୟାଠାରୁ ସୁନା ରୂପାର ଦାମ ବେଶି ନୁହେଁ । ଗଛ-ପତ୍ରଠାରୁ ବି ସୁନା ବଡ଼ ନୁହେଁ । ତୋର ଭଲ ବୁଦ୍ଧି ଆସୁ ।

ରାଜା ଠାକୁରାଣୀଙ୍କୁ ପ୍ରଣାମ କରି ସଙ୍ଗେ ସଙ୍ଗେ ନଦୀକୁ ଯାଇ ସ୍ନାନ କଲେ । କଳସୀଏ ପାଣି ଘେନି ନଅରକୁ ଧାଇଁଲେ । ଆଗେ ସୁନାର ଲକ୍ଷ୍ମୀ ଉପରେ ପାଣି ସିଞ୍ଚିଦେଲେ । ଲକ୍ଷ୍ମୀ ତାର ପୂର୍ବ ଦେହ ଫେରି ପାଇ ବାପାଙ୍କ ବେକରେ ଓହଳି ପଡ଼ି କହିଲା, "ବାପା, ଆମ ଗୋଲାପ ଗଛକୁ କିଏ ଏପରି କରିଦେଲା ।"

ରାଜାଙ୍କ ଆଖିରୁ ଲୁହଧାର ବହିଗଲା । ସେ ଲକ୍ଷ୍ମୀକୁ କୋଳରେ ଧରି କହିଲେ, "ମା' ତୁ ଚିନ୍ତା କରନା । ଚାଲ, ତୋ ଗଛ ପୁଣି ଆଗପରି ହୋଇଯିବ ।" ଝିଅକୁ ସଙ୍ଗରେ ନେଇ ରାଜା ବଗିଚାର ଗଛପତ୍ରମାନଙ୍କ ଉପରେ ପାଣି ସିଞ୍ଚିଦେଲେ । ସେମାନଙ୍କ ରୂପ ଆଗପରି ହୋଇଗଲା । ଲକ୍ଷ୍ମୀ ମୁହଁରେ ପୁଣି ହସ ଉଠିଲା ।

ରାଜା ଆଉ ସୁନାକୁ ଲୋଭ କଲେ ନାହିଁ । ଲୋକଙ୍କ ସୁଖ-ଦୁଃଖ ବୁଝିଲେ । ଗଛର ଶାଗୁଆ ପତ୍ର ତାଙ୍କୁ ପୂର୍ବଠାରୁ ବେଶି ସୁନ୍ଦର ଦିଶିଲା । ସେ ବୁଝି ପାରିଲେ—ଈଶ୍ୱର ଏ ସଂସାରକୁ ମଣିଷ ପାଇଁ ଗଢ଼ିଛନ୍ତି । ଯାହା ପାଇଁ ଯାହା ଦରକାର ସେ ସବୁ ଦେଇଛନ୍ତି । ଯେ ଲୋଭରେ ପଡ଼ି ଖାଲି ଧନ ସଞ୍ଚିବାକୁ ବସେ, ସେ ମଣିଷ ନୁହେଁ, ପଶୁ ।

ରାଜା ଝିଅକୁ ଘେନି ସୁଖରେ ରାଜ୍ୟ ପାଳିଲେ ।

## ପ୍ରଶ୍ନ

୧ । ରାଜା କାହିଁକି ଠାକୁରାଣୀଙ୍କୁ ବର ମାଗିଲେ ?
୨ । ଠାକୁରାଣୀଙ୍କ ବରରେ ରାଜାଙ୍କର କି କ୍ଷତି ହେଲା ?
୩ । ରାଜା କି ଶିକ୍ଷା ପାଇଲେ ?

---

## ପୁନର୍ମୂଷିକୋଭବ

ଗୋଟିଏ ବଣ ଭିତରେ ଜଣେ ଋଷି ଥାଆନ୍ତି । ତାଙ୍କ ଆଶ୍ରମଟି ବଡ଼ ସୁନ୍ଦର । ତା ପାଖରେ ଗୋଟିଏ ନଈ କୁଳୁକୁଳୁ ହୋଇ ବହି ଯାଉଥାଏ । ଗଛର ଡାଳମାନଙ୍କରେ କୋଇଲି ପ୍ରଭୃତି ମଧୁର ସ୍ୱରରେ ଗାଉଥାନ୍ତି । ଗଛ ଲତା ଗହଳି ଭିତରେ ଋଷିଙ୍କର ଗୋଟିଏ କୁଡ଼ିଆଟି । ଋଷି ସକାଳୁ ନଈରେ ସ୍ନାନ କରିଆସି ଧ୍ୟାନରେ ବସନ୍ତି । ସନ୍ଧ୍ୟା ହୋଇ ଆସିଲା ବେଳକୁ କୁଡ଼ିଆରୁ ବାହାରି ଆଖପାଖ ଗାଁଆକୁ ବୁଲିଯାଆନ୍ତି । ସେଠାରୁ ଯାହାକିଛି ଭିକ୍ଷା ମାଗି ଆଣନ୍ତି, ସେଥିରେ ତାଙ୍କର ଚଳିଯାଏ ।

ଋଷି ତପସ୍ୟାବଳରେ ଅସାଧ୍ୟ କାମ କରି ପାରନ୍ତି । ବଣର ବାଘ ଭାଲୁ ସୁଦ୍ଧା ତାଙ୍କର କିଛି ଅନିଷ୍ଟ କରନ୍ତି ନାହିଁ । ସେ ଯାହାକୁ ଯାହା କହନ୍ତି, ତାହା ନିଶ୍ଚୟ ହେବ । ମହାପୁରୁଷ ସେ; ତାଙ୍କ କଥା କଣ ଅନ୍ୟଥା ହୁଏ ?

ଦିନେ ଋଷି ଗୋଟିଏ ଗଛମୂଳେ ବସି ତପସ୍ୟା କରୁଥିଲେ । ତାଙ୍କ ଆଖି ବୁଜି ହୋଇଥାଏ । ଏତିକିବେଳେ କାଉଟିଏ ମୂଷା ଛୁଆଟିଏ ଧରି ଆଣି ତାକୁ ଖାଇବ ବୋଲି ସେହି ଗଛ ଉପରେ

ବସିଲା । ଛୁଆଟିକୁ ଗଛ ଡାଳରେ ରଖି ଥଣ୍ଟରେ ଖୁମ୍ପିବାକୁ ଯାଉଛି ସେଇଟି ଖସି ପଡ଼ିଲା । ଠିକ୍ ତଳେ ଋଷି ବସିଥିଲେ । ମୂଷାଛୁଆଟି ପଡ଼ିଲା ତାଙ୍କ କୋଳରେ । ଋଷିଙ୍କର ଧ୍ୟାନ ଭାଙ୍ଗିଗଲା । ସେ ଆଖି ଖୋଲି ଦେଖିଲେ ଯେ କୋଳରେ ମୂଷା ଛୁଆଟିଏ ପଡ଼ିଛି ।

ଋଷି ତ ବଡ଼ ଦୟାଳୁ ଲୋକ । ସେ ମୂଷା ଛୁଆଟିକୁ ଆପଣା କୁଡ଼ିଆକୁ ନେଇ ରଖିଲେ । ଭିକ୍ଷା ମାଗି ଯାହା ଆଣନ୍ତି ସେଥିରୁ ମୂଷା ଛୁଆକୁ କିଛି ଦିଅନ୍ତି । ରାତିରେ ମୂଷାଛୁଆ ଋଷିଙ୍କ କୋଳରେ ଶୁଏ ।



କେତେବେଳେ କେତେବେଳେ ସେ କୁଡ଼ିଆ ପାଖରେ ଟିକିଏ ବୁଲି ଆସେ ।

ଋଷି ଏକୁଟିଆ ଥାଆନ୍ତି । କଥାବାର୍ତ୍ତା ହେବାକୁ ବି ପାଖରେ କେହିନାହିଁ । ତହୁଁ ସେ ମୂଷାକୁ ମନ୍ତ୍ର ବଳରେ କଥା କହିବାର

ଶକ୍ତି ଦେଲେ । ସେ ଋଷିଙ୍କ ସାଥିରେ ମନୁଷ୍ୟ ପରି କଥାବାର୍ତ୍ତା ହୋଇପାରିଲା ।

ଦିନେ ଋଷି ଗଛମୂଳେ ଧ୍ୟାନରେ ବସିଛନ୍ତି । ମୂଷାଟି କୁଡ଼ିଆ ଘରପାଖେ ବୁଲୁଥାଏ । ଠିକ୍ ସେତିକିବେଳକୁ ଗୋଟାଏ ବଡ଼ ବଣୁଆ ବିରାଡ଼ି ଆହାର ଖୋଜି ବୁଲୁଥିଲା । ସେ ମୂଷାକୁ ଦେଖି ତାକୁ ଖାଇବ ବୋଲି କୁଦା ମାରିଲା । ଯାହା ହେଉ, ମୂଷାର ଭାଗ୍ୟ ଭଲ । ବିରାଡ଼ି ତା ଉପରକୁ ଡେଇଁ ପଡ଼ିବା ଆଗରୁ ସେ ଦୌଡ଼ି ଯାଇ କୁଡ଼ିଆ ଭିତରେ ପଶିଗଲା ।

ସାଂଜରେ ଋଷି ମୂଷାକୁ କୋଳକୁ ନେଇ ଶୋଇବାକୁ ଗଲେ । ମୂଷା କହିଲା, "ମହାରାଜ, ମୋର ଆଉ ପ୍ରାଣରେ ଆଶା ନାହିଁ । ଆଜି ଗୋଟାଏ ବିରାଡ଼ି ଆସି ମୋତେ ଧରିବାକୁ ବସିଥିଲା । ଭାଗ୍ୟବଳରୁ ଖସି ଆସିଲି । ମୋତେ ଦୟାକରି ବଢ଼ାଇ ଶେଷରେ କଅଣ ବିରାଡ଼ି ହାତରେ ମରିବାକୁ ଛାଡ଼ିଦେବେ ? ଦୟା କରି ମୋତେ ଗୋଟିଏ ବଡ଼ ବିରାଡ଼ି କରିଦିଅନ୍ତୁ । ତେବେ ମୁଁ ଟିକିଏ ନିର୍ଭୟରେ ବୁଲିବୁଲି କରିବି ।"

ଋଷି ଦେଖିଲେ ଯେ ମୂଷା ଯାହା କହୁଛି ସତ । ସେ ମନ୍ତ୍ର ପଢ଼ି କହିଲେ, "ତୁ ଗୋଟେ ଏ ବଡ଼ ବିରାଡ଼ି ହୋଇ ଯା ।"

ଋଷିଙ୍କର କଥା ସଙ୍ଗେ ସଙ୍ଗେ ଫଳିଲା । ମୂଷାଟି ଗୋଟିଏ ବଡ଼ ବିରାଡ଼ି ହୋଇଗଲା । ବିରାଡ଼ିଟି କୁଡ଼ିଆ ପାଖରେ ବୁଲୁଥାଏ । ରାତିରେ ସେହି କୁଡ଼ିଆରେ ରହେ ।

ଦିନେ ବିରାଡ଼ି କୁଡ଼ିଆଠାରୁ ଟିକିଏ ଦୂରକୁ ଯାଇ ବୁଲୁଛି, ଏହି ସମୟରେ ବଣ ଆଡ଼ୁ ଗୋଟିଏ କୁକୁର ଧାଇଁ ଆସିଲା । ତାକୁ ଦେଖି ବିରାଡ଼ିର ରକ୍ତ ପାଣି ହୋଇଗଲା । ସେ ବେକଲରେ ଦଉଡ଼ିଯାଇ କୁଡ଼ିଆ ଭିତରେ ଲୁଚିଗଲା । ତା ଦେହ ଥରଥର ହେଉଥାଏ ।

କିଛି ସମୟପରେ ଋଷି କୁଡ଼ିଆକୁ ଆସିଲେ । ବିରାଡ଼ିର ଟିକିଏ ସାହସ ହେଲା । ସେ ଆଗ ଗୋଡ଼ ଦୁଇଟି ଯୋଡ଼ି ଋଷିଙ୍କୁ କହିଲା, "ମହାରାଜ, ଆଜି ମୋ ପ୍ରାଣ ଯାଉଥିଲା । ଗୋଟାଏ କାଳିଆ କୁକୁର ମୋତେ ଧରିବାକୁ ଆସିଥିଲା । ଏତେବେଳଯାଏ ମୋ ଛାତି ଥରୁଛି । ତା ମୁହଁରେ ପଡ଼ିଥିଲେ ଏତେବେଳକୁ ମୋ କଥା ସରନ୍ତାଣି । ଆପଣଙ୍କ ଆଶୀର୍ବାଦରୁ ଆଜି ମୋ ଜୀବନ ରହିଗଲା । ମୋତେ ଗୋଟିଏ ବଡ଼ କୁକୁର କରି ଦିଅନ୍ତୁ ଯେ କୁକୁର ଦେଖିଲେ ମୋର ଆଉ ଡର ହେବ ନାହିଁ ।"

ଋଷି ବିରାଡ଼ିର କଥା ଶୁଣି ମନ୍ତ୍ର ପଢ଼ି କହିଲେ— 'ତୁ ଗୋଟିଏ କୁକୁର ହୋଇ ଯା ।'

ବିରାଡ଼ି ଗୋଟିଏ କୁକୁର ହୋଇଗଲା । ସେହି ଦିନଠାରୁ ସେ ନିଶ୍ଚିନ୍ତରେ କୁଡ଼ିଆ ଚାରିପାଖରେ ବୁଲିଲା । ବେଳେ ବେଳେ ସେ ଆଡ଼ରୁ ବିରାଡ଼ି କମ୍ବା କୁକୁର ଆସନ୍ତି । କିନ୍ତୁ ତାର କିଛି ଅନିଷ୍ଟ କରିବାକୁ ସେମାନଙ୍କର ସାହସ ହୁଏ ନାହିଁ ।

ଏହିପରି କିଛି ଦିନ ଗଲା । ଦିନେ ଋଷି ଭିକ୍ଷା କରିବାକୁ ଯାଇଥାନ୍ତି । ଏହି ସମୟରେ ବଣରୁ ଗୋଟିଏ ବାଘ କୁଡ଼ିଆ ପାଖକୁ ଆସିଲା । କୁକୁରଟାଏ ଦେଖି ସେ ତାକୁ ଖାଇବାକୁ ବହୁତ ବେଳଯାଏ ଛକି ରହିଲା । ମାତ୍ର କୁକୁର କୁଡ଼ିଆ ଭିତରେ ଲୁଚି ରହିବାରୁ ସେ ତାକୁ ଧରିପାରିଲା ନାହିଁ । କିଛି ବେଳ ପରେ ବାଘଟି ବଣ ଭିତରକୁ ଚାଲିଗଲା ।

ଋଷି ଫେରି ଆସିଲେ । କୁକୁର ଋଷିଙ୍କୁ ପ୍ରଣାମ କରି କାନ୍ଦି କାନ୍ଦି କହିଲା, "ମହାରାଜ, ମୋ ଦୁଃଖ ଗଲାନାହିଁ । ମୁଁ ଥିଲି ଟିକି ମୂଷାଟିଏ । ବିରାଡ଼ି ମୁହଁରୁ ବଞ୍ଚାଇବାପାଇଁ ମୋତେ ଆପଣ ବିରାଡ଼ି କଲେ । କୁକୁର ଆସି ମୋର ଶତ୍ରୁ ହେଲା । କୁକୁରଠାରୁ

ରଖିବାପାଇଁ ମୋତେ ବଡ଼ କୁକୁରଟିଏ କରି ଦେଇଛନ୍ତି । ମାତ୍ର ଏବେ ମୋର ଆଉ ଏକ ଶତ୍ରୁ ହେଲାଣି । ଗୋଟାଏ ବାଘ ଆସି ଆଜି ମୋତେ ଖାଇବାକୁ ବସିଥିଲା । ଆପଣ ଯିବାବେଳକୁ ମୁଁ କୁଡ଼ିଆ ଭିତରେ ଲୁଚି ରହିଥିଲି । ଆପଣ ନ ଥିବାବେଳେ ସେ ବାଘ ଆସି କେଉଁଦିନ ମୋତେ ଖାଇଦେବ । ଏତେ ଦୟା କରିଛନ୍ତି । ମୋତେ ଗୋଟିଏ ବାଘ କରି ଦିଅନ୍ତୁ ଯେ ମୋର ଆଉ କାହାରିକି ଡରଭୟ ରହିବ ନାହିଁ ।”

ଋଷିଙ୍କର ବଡ଼ ଦୟା; କୁକୁରର କଥା ଶୁଣି ମନ୍ତ୍ର ପଢ଼ି କହିଲେ, ‘ତୁ ଗୋଟିଏ ବଡ଼ ବାଘ ହୋଇ ଯା ।’

କୁକୁରଟି ବାଘ ହୋଇଗଲା । ସେ ନିର୍ଭୟରେ ବଣରେ ବୁଲିଲା । ବେଳେ ବେଳେ ଆସି ଋଷିଙ୍କ କୁଡ଼ିଆରେ ରହେ । ଋଷି ଗଛମୂଳେ ବସି ତପସ୍ୟା କଲାବେଳେ ସେ ପାଖରେ ଶୁଏ । ଏହିପରି ଚାରି ଦିନ ଯାଉଥାଏ ।

ଥରେ ଋଷିଙ୍କ ଆଶ୍ରମକୁ କେତେ ଜଣ ଲୋକ ଆସିଲେ । ଋଷି ସେମାନଙ୍କୁ କେତେ ଧର୍ମକଥା କହିଲେ । ସେମାନେ ଋଷିଙ୍କ ପାଖରେ ବାଘଟିକୁ ଦେଖି ପଚାରିଲେ, “ଆପଣ ଏ ବାଘଟିକୁ କାହିଁକି ପାଖରେ ରଖିଛନ୍ତି ? ଆମକୁ ଏଠାକୁ ଆସିବାକୁ ଭୟ ହେଉଛି ।”

ଋଷି କହିଲେ, “ତୁମ୍ଭେମାନେ ଭୟ କର ନାହିଁ । ଏଇଟି ପ୍ରକୃତରେ ବାଘ ନୁହେଁ । ଏଇଟି ଥିଲା ଗୋଟିଏ ମୂଷା ଛୁଆ । ତାକୁ ବିରାଡ଼ି ମାରିବାକୁ ବସିବାରୁ ତାକୁ ବିରାଡ଼ି କରି ଦେଇଥିଲି । ବିରାଡ଼ି କୁକୁରକୁ ଦେଖି ଡରିବାରୁ ତାକୁ କୁକୁର କଲି । କୁକୁରକୁ ବାଘ ଖାଇବାକୁ ଆସିବାରୁ ଏବେ ତାକୁ ବାଘ କରିଦେଇଛି ।”

ଲୋକେ ଋଷିଙ୍କର ଏପରି କରାମତି ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ବାଘ ଋଷିଙ୍କର ଏ ସବୁ କଥା ଶୁଣି ମନେ ମନେ ଭାବିଲା, “ଏ ମହାପୁରୁଷଙ୍କୁ ମନ୍ତ୍ର ମନ୍ତ୍ର କରି ଫେରାଇ ଦେବାକୁ ମନ ହେଉଥିଲା । ଖାଲି ଋଷିଙ୍କୁ ଡର ରହିଗଲା । ସେ ଲୋକଗୁଡ଼ାକ ଏବେ ଜାଣିଗଲେଣି ଯେ ମୁଁ ପ୍ରକୃତରେ ଗୋଟାଏ ମୂଷା । ଏଣିକି ଯେତେ ଲୋକ ଆସିବେ ସମସ୍ତେ ଜାଣିବେ ଯେ ମୁଁ ପ୍ରକୃତ ବାଘ ନୁହେଁ, ଗୋଟାଏ ମୂଷା । ଏହାଠାରୁ ବଳି ଅପମାନ କଣ ଅଛି ?



ଏକବେଳେ ଦୁଇଜଣ ଲୋକ ସେଇ କୁଡ଼ିଆ ପାଖରେ ଯାଉଥିଲେ । ଜଣେ ଆରଜଣକୁ କହିଲା, “ଋଷିଙ୍କ ପାଖରେ ଏ ଯେଉଁ ବାଘଟା ଅଛି, ତା କଥା ଜାଣିଛୁ ? ସେଇଟା ଗୋଟାଏ ମୂଷା ଥିଲା । କାଉ ଥଣ୍ଟରୁ ଋଷିଙ୍କ ପାଖେ ଖସି ପଡ଼ିଥିଲା । ଋଷି ମନ୍ତ୍ରବଳରେ ତାକୁ ଗୋଟାଏ ବାଘ କରି ଦେଇଅଛନ୍ତି ।”

ଏ କଥା ଶୁଣିଲାକ୍ଷଣି ବାଘର ରକ୍ତ ଗରମ ହୋଇଗଲା । ସେ ବିଚାରିଲା, "ଏ ଋଷି ଯେତେ ଦିନଯାଏ ଥିବେ, ମୋତେ ସମସ୍ତେ ମୂଷା ବୋଲି କହୁଥିବେ । ଏ ଋଷିଙ୍କୁ ମାରିଦେଲେ ଯିବ । ଆଉ କିଏ ମୋ କଥା କିପରି ଜାଣିବ ?"

ଏହାପରି ବିଚାରି ଋଷିଙ୍କୁ ମାରିବାପାଇଁ ସେ ସଜ ହେଲା । ଋଷି ତ ସର୍ବଜ୍ଞ । ବାଘର ମନ କଥା ଜାଣିପାରି ତାଙ୍କ ଉପରକୁ ଡେଇଁ ପଡ଼ିବା ଆଗରୁ କହିଲେ, "ପୁନର୍ମୂଷିକୋଭବ" (ପୁଣି ମୂଷା ହୋଇ ଯା ) । ଏହା କହିଲାକ୍ଷଣି ବାଘଟି ଆଗପରି ମୂଷାଟିଏ ହୋଇଗଲା ।

## ପ୍ରଶ୍ନ

୧ । ଋଷି କାହିଁକି ମୂଷାକୁ ବିରାଡ଼ି, ବିରାଡ଼ିକୁ କୁକୁର ଓ କୁକୁରକୁ ବାଘ କରିଦେଲେ ?

୨ । ବାଘ କାହିଁକି ଋଷିଙ୍କୁ ମାରିବାକୁ ବସିଥିଲା ?

---

# ମଣିଷ ହୁଅ

ସହରଠାରୁ କିଛି ଦୂରରେ ଗୋଟିଏ ବଣ ଭିତରେ ଜଣେ ବ୍ରାହ୍ମଣ ରହୁଥିଲେ । ତାଙ୍କପରି ପଣ୍ଡିତ ଲୋକ ସେ କାଳରେ କେହି ନଥିଲେ । ବଣ ଭିତରେ ତାଙ୍କର ଘର । ସ୍ତ୍ରୀଙ୍କୁ ଘେନି ସେ ରହୁଥାନ୍ତି । ଭଲ ପଣ୍ଡିତ ବୋଲି ତାଙ୍କ ପାଖରେ ପଢ଼ିବାକୁ କେତେ ପିଲା ମଧ୍ୟ ଥାଆନ୍ତି । ସେମାନେ ତାଙ୍କ ଘରେ ଖିଆପିଆ କରନ୍ତି, ତାଙ୍କ ଘରକାମ କରନ୍ତି । ଗୁରୁ ଓ ତାଙ୍କ ସ୍ତ୍ରୀ ସେମାନଙ୍କୁ ନିଜର ପୁଅ ପରି ଦେଖନ୍ତି ।

ସେ ଦେଶର 'ରଜା ଏବଂ ବ୍ରାହ୍ମଣଙ୍କର ଚଳିବା ପାଇଁ ସାମାନ୍ୟ କିଛି ଖଞ୍ଜା କରିଦେଇଥାନ୍ତି । ସେଥିରେ ସେମାନେ ଚଳନ୍ତି । କିଛି ନଅଣ୍ଟ ଅଣ୍ଟ ହେଲେ ମାଗି ଆଣନ୍ତି । ବ୍ରାହ୍ମଣଙ୍କର କିଛି ଆଡ଼ମ୍ବର ନ ଥାଏ । ଯାହା କିଛି ଦୁଇଟା ଖାଇଦେଲେ ସନ୍ତୁଷ୍ଟ ।

ରଜା ପଣ୍ଡିତଙ୍କ ଗୁଣରେ ଭାରି ସନ୍ତୁଷ୍ଟ ଥାଆନ୍ତି । ସମସ୍ତେ କହନ୍ତି ଯେ ବ୍ରାହ୍ମଣଙ୍କ ପାଖରେ ଯେ ପଢ଼ିଛି, ସେ ନିଶ୍ଚେ ଗୋଟାଏ ଭଲ ମଣିଷ ହେବ ।

ରଜାଙ୍କର ଗୋଟିଏ ବୋଲି ପୁଅ ଥାଏ । ରଜା ବିଚାରିଲେ, "ମୁଁ ଆସି ବୁଢ଼ା ହେଲିଣି । ମୋର ଆଉ କେତେ ବା ପରମାୟୁ । ଏଇ ପୁଅ ଦିନେ ଏ ରାଜ୍ୟ ବୁଝିବ । ତାକୁ ଭଲକରି ଶିକ୍ଷା ଦେବା ଦରକାର ।"

ଏହାପରେ ବିଚାରି ସେ ପୁଅଟିକୁ ସେହି ବ୍ରାହ୍ମଣଙ୍କ ଘରକୁ ପଠାଇ ଦେଲେ । ବ୍ରାହ୍ମଣ ଅନ୍ୟ ପିଲାଙ୍କୁ ଯେପରି ଦେଖନ୍ତି, ରଜାଙ୍କ ପୁଅକୁ ମଧ୍ୟ ସେହିପରି ଦେଖନ୍ତି । ସମସ୍ତେ ଯାହା ଖାଆନ୍ତି, ରଜାପୁଅକୁ ମଧ୍ୟ ସେଇଆ ଖାଇବାକୁ ଦିଆଯାଏ । ସବୁ ପିଲା ତ ତାଙ୍କର ପୁଅ । ଜଣେ ରଜା ଘରେ ଜନ୍ମ ବୋଲି କାହିଁକି ତାକୁ ପାତର ଅନ୍ତର କରିବେ ?

ପିଲାମାନେ ପ୍ରତିଦିନ ବଣକୁ କାଠ ଆଣିବାକୁ ଯାଆନ୍ତି । ରଜାପୁଅ ମଧ୍ୟ ଅନ୍ୟମାନଙ୍କ ସାଙ୍ଗରେ ଯାଏ । ସେମାନଙ୍କ ଯିବା ବାଟରେ ଗୋଟିଏ ବୁଢ଼ୀର ଘର ପଡ଼େ । ବୁଢ଼ୀ ବାଟ ପାଖରେ କିଛି ବଡ଼ି ଶୁଖାଇ ଥାଏ । ଦିନେ ରଜାପୁଅ ବିଚାରିଲା— ବଡ଼ି ଚାଖିଲେ କିପରି ଲାଗେ ? ଏହାପରି ଭାବି ସେ ସେଥିରୁ ମୁଠାଏ ନେଇ ଆସିଲା । ତାକୁ ବଡ଼ି ଖାଇବାକୁ ଭଲ ଲାଗିଲା ।

ପ୍ରତିଦିନ ବାଟରେ ଗଲାବେଳେ ରଜାପୁଅ ବୁଢ଼ୀ ଶୁଖାଇ-ଥିବା ଗହିଁରୁ ମୁଠାଏ ଦିମୁଠା ନେଇ ଆସି ଖାଏ । କିଛିଦିନ ପରେ ବୁଢ଼ୀ ଜାଣିପାରିଲା ଯେ କିଏ ଜଣେ ତା ଗହିଁରୁ କିଛି ପ୍ରତିଦିନ ନେଉଛି । ଦିନେ ସେ ଗହିଁ ଶୁଖାଇ ଦେଇ ଗୋଟିଏ ଗଛ ଆଡ଼ୁଆଳରେ ଜଗି ରହିଲା ।

ବ୍ରାହ୍ମଣଙ୍କ ଶିଷ୍ୟମାନେ ସେହି ବାଟେ ଯାଉଥାନ୍ତି । ରଜାପୁଅ ସଭିଙ୍କ ପଛରେ । ସେ ମୁଠାଏ ଗହିଁ ନେଇ ଗଲାବେଳକୁ ବୁଢ଼ୀ ଦେଖି ପକାଇଲା । ବୁଢ଼ୀ ଭାବିଲା, ପିଲାଟିକୁ ବୋଧହୁଏ ବଡ଼ ଭୋକ ହେଉଛି । ସେ କହିଲା, "ବାପା, ଭୋକ ହେଉଛି ତ ଆଉ ମୁଠାଏ ନେଇଯା ।"

ରଜାପୁଅ ତ ଭୋକ ବିକଳରେ ଗହିଁ ଚୋରାଉ ନ ଥିଲା, ଖାଲି ପାଟି ସୁଖରେ ଖାଉଥିଲା । ଏଥିପୂର୍ବରୁ ତା ସାଥିମାନେ କେତେଥର ତାକୁ କହିଥିଲେ—"ଆରେ ଭାଇ, ପରର ଜିନିଷ ଛୁଇଁବା ପାପ । କିଏ ଏଠାରେ ଗହିଁ ଶୁଖାଇଛି । ଆମେ କାହିଁ ସେଥିରୁ ମୁଠାଏ ନେବା ? ଏପରି କରିବା ହେଉଛି ଚୋରି । ଗୁରୁ ଏ କଥା ଜାଣିଲେ ତାଙ୍କ ମନରେ ବଡ଼ କଷ୍ଟ ହେବ ।"

ରଜାପୁଅ ସାଥିମାନଙ୍କ କଥା ନ ଶୁଣି ପ୍ରତିଦିନ ଗହିଁ ଚୋରାଇ ଖାଉଥିଲା । ଏବେ ବୁଢ଼ୀ ପାଖରେ ଧରା ପଡ଼ିଗଲା । ସେ ଗହିଁମୁଠାକ ଫିଙ୍ଗିଦେଇ କହିଲା—'ମୁଁ କଅଣ କାଙ୍ଗାଳ ଯେ ତୋଠୁଁ ଗହିଁ ମୁଠାଏ ନେବି ?'

ଏହିପରି କେତେଦିନ ଗଲା । ବୁଢ଼ୀ ରଜା ପୁଅର କାମରୁ ଜାଣି ପାରିଲା ଯେ ପିଲାଟାର ସ୍ୱଭାବ ଖରାପ । ଅନ୍ୟର ଜିନିଷ ଚୋରି କରି ନେବା ତାର ପ୍ରକୃତି । ଲୁଚେଇ ନେଇ ଖାଉଚି, କିନ୍ତୁ ଯାଚି ଦେଲେ ନେଉ ନାହିଁ । ବୁଢ଼ୀ ମନେ କଲା—ପିଲାଟର ଏ ପ୍ରକୃତି

ନ ଗଲେ ସେ ମଣିଷ ହେବ ନାହିଁ । ସେ ବୁଝିଲା ଯେ ପିଲାଟା ବ୍ରାହ୍ମଣଙ୍କର ଗୁନ । ସେ ତାଙ୍କ ପାଖକୁ ଯାଇ ସବୁ କଥା କହିଲା ।

ଗୁରୁ ଅନ୍ୟ ପିଲାଙ୍କଠାରୁ ବୁଝିଲେ ଯେ କଥାଟା ସତ । ରଜା ପିଲା, କେତୋଟା ବର୍ଷ ଗଲେ ସେ ହେବ ରଜା । ଲକ୍ଷ ଲକ୍ଷ ଲୋକଙ୍କୁ ଏ ଚଳେଇବ । ରାଜ୍ୟର ହାନି ଲାଭ ବୁଝିବ, ଦୋଷୀକୁ ଦଣ୍ଡ ଦେବ । ଯାହାର ଚୋରି କରିବା ଅଭ୍ୟାସ, ସେ କପରି ରାଜ୍ୟ ହାଲ ବୁଝିବ । ରାଜା ତ ପୁଅଟିକୁ ତାଙ୍କ ପାଖକୁ ପଠାଇଛନ୍ତି ମଣିଷ କରିବାକୁ ।



ଗୁରୁ ରଜାପୁଅକୁ ଡାକି କହିଲେ, ତୁମେ ଚୋରି କରୁଛ ତୁମେ ଦିନେ ରଜା ହେବ । ତୁମେ ଖରାପ ହେଲେ ଲକ୍ଷ ଲକ୍ଷ

ଲୋକଙ୍କର ଅନିଷ୍ଟ କରିବ । ସେଥିପାଇଁ ତୁମକୁ କଠିନ ଦଣ୍ଡ ଦିଆଯିବ ।

ରାଜାପୁଅ ଅନ୍ୟାୟ କାମ ତ କରିଛି; କହିବ କଅଣ ? ଗୁରୁ ତାଙ୍କୁ ଭୟଙ୍କର ମାଡ଼ ଦେଲେ । ଯାହାର ବାଜିବାରୁ ଦେହରେ ଅନେକ ଦାଗ ରହିଗଲା । ତାଙ୍କୁ କେତେଦିନ ଯାଏ ଖାଲି ରୁଟି ଖାଇବାକୁ ଦିଆଗଲା ।

ରାଜାପୁଅକୁ ଏ ଅପମାନ ବଡ଼ ବାଧିଲା । ହେଲେ ସେ ଆଉ କେବେ ସେ ଘଟଣାକୁ ଭୁଲିଲେ ନାହିଁ ।

କେତେ ବର୍ଷ ଗଲା । ବୁଢ଼ା ରାଜା ମରିଗଲେ । ରାଜପୁଅ ବ୍ରାହ୍ମଣଙ୍କ ପାଖରୁ ବିଦାୟ ନେଇ ରାଜ୍ୟକୁ ଆସି ସିଂହାସନରେ ବସିଲେ ।

ରାଜା ହେଲେ କଅଣ ହେବ, ତାଙ୍କ ମନରେ ଗୁରୁଙ୍କର ମାଡ଼ କଥା ରହିଥାଏ । ସେ ଭାବିଲେ, "ଗୁରୁ ବ୍ରାହ୍ମଣଟାଏ ! ମୋତେ କଅଣ କମ୍ ମାରିଛି ! ସେ କଅଣ ଜାଣି ନଥିଲା ଯେ ମୁଁ ରାଜାପୁଅ; ଯେଉଁଦିନ ହେଲେ ରାଜା ହେବି । ମନ କଲେ ଘଡ଼କେ ତା ମୁଣ୍ଡ କାଟି ଅଲଗା କରି ଦେଇ ପାରିବି । ଆଜି ତାକୁ ଧରାଇ ଆଣିବି । ସେ ମୋତେ ଯେତିକି ଦଣ୍ଡ ଅପମାନ ଦେଇଛି, ତାକୁ ତାର ଶହେ ଗୁଣ କରି ଶୁଝିଦେବି ।"

ଏହିପରି ଭାବିକରି ସେ ଗୁରୁଙ୍କୁ ଡାକିଆଣିବା ପାଇଁ ଜଣେ ଲୋକଙ୍କୁ ପଠାଇଲେ । ଖବର ପାଇ ବ୍ରାହ୍ମଣ ଭାବିଲେ, ବୋଧହୁଏ ମୋର ଶିଷ୍ୟ ରାଜା ହୋଇଛି; ତେଣୁ ମୋତେ ପୁରସ୍କାର ଦେବାକୁ ଡାକି ପଠାଇଛି । ସେ ଆନନ୍ଦରେ ରାଜାଙ୍କ ପାଖରେ ପହଞ୍ଚିଲେ ।

ରାଜା ସିଂହାସନରେ ବସିଥାନ୍ତି, ପାଖରେ ତାଙ୍କର ପାତ୍ରମନ୍ତ୍ରୀ । ବ୍ରାହ୍ମଣଙ୍କୁ ଦେଖିଲାକ୍ଷଣି ରାଜା ସମସ୍ତଙ୍କୁ ଅନାଇ କହିଲେ, "ଏ

ବ୍ରାହ୍ମଣଟା ପାଖରେ ମୁଁ ପଢୁଥିଲି । ଏହାର ପୁଣି ଏତେ ସାହସ ଯେ ସବୁ ପିଲାଙ୍କ ଆଗରେ ମୋତେ ମାଡ଼ ଓ ଅପମାନ ଦେଲା । ଯାଅ କଟୁଆଳ, ଏ ବ୍ରାହ୍ମଣ ପିଠିରେ ଶହେ ବେତ ମାଡ଼ ଦେଇ ଅପମାନ ଦିଅ । ସେ ବୁଝୁ ଯେ ରଜାପୁଅକୁ ମାଡ଼ଦେବା ସହଜ କଥା ନୁହେଁ ।



ପାତ୍ରମନ୍ତ୍ରୀମାନେ କେହି କିଛି କହି ପାରିଲେ ନାହିଁ । କଟୁଆଳ ସେମାନଙ୍କ ଆଗରେ ପଣ୍ଡିତଙ୍କୁ ବେତରେ ଅପମାନ ଦେଇ ମାଡ଼ ଦେଲା । ତାର ବା ଦୋଷ କଅଣ ? ସେ ତ ହୁକୁମର ଚାକର ।

ଗୁରୁଙ୍କର ଦେହଯାକ ଚୋପା ଫାଟି ଯାଇଥାଏ । ଆଖିରୁ ଧାର ଧାର ଲୁହ ବହୁଥାଏ । ରାଜା ତାଙ୍କୁ କହିଲେ, "ଆରେ ବ୍ରାହ୍ମଣ,

ରଜାପୁଅଙ୍କୁ ମାଡ଼ ଦେବାର ଫଳ ଏବେ ପାଇଲ ?" ବ୍ରାହ୍ମଣ ଏତେ ବେଳଯାଏ ଚୁପ୍‌ରହି ସବୁ ମାଡ଼ ଗାଳି ସହୁଥିଲେ । ରଜାଙ୍କ କଥା ଶୁଣି ସେ କହିଲେ, "ମାଡ଼ଗାଳି ଖାଇବାରୁ ମୁଁ କାନ୍ଦୁନାହିଁ । ମୋ କାନ୍ଦିବାର କାରଣ ହେଉଛି ଭିନ୍ନ । ଏତେ କାଳ ହେଲା ମୁଁ ପିଲା-ମାନଙ୍କୁ ଶିକ୍ଷା ଦେଇ ଆସୁଛି । ସେମାନେ ମଣିଷ ହୋଇ ସଂସାରରେ ନାଁ କରୁଛନ୍ତି । କେବଳ ଆଜି ଯେ ରଜା ହୋଇଛି, ସେଇଟି ଅମଣିଷ ହୋଇ ରହିଲା । ଭାବିଥିଲି, ମାଡ଼ ଖାଇ ତାର ସ୍ୱଭାବ ବଦଳି ଯାଇଛି । ସେ ପଢ଼ିଲାବେଳେ ପରର ଜିନିଷ ଚୋରି କରୁଥିଲା ବୋଲି ମାଡ଼ ଦେଇଥିଲି । କିନ୍ତୁ ଦେଖୁଛି, ସେ ଯେଉଁ ପଶୁ ଥିଲା ସେହିପରି ପଶୁ ଅଛି । ମଣିଷ ହୋଇପାରି ନାହିଁ ।"

ଏକଥା ଶୁଣି ସଭାର ସମସ୍ତେ ରଜାଙ୍କୁ ଛି-ଛି କଲେ । ରଜାଙ୍କୁ ମଧ୍ୟ ଭାରି ଲାଜ ମାଡ଼ିଲା । ଆସନରୁ ଓହ୍ଲାଇ ବୁଢ଼ାପାରି ସେ ବ୍ରାହ୍ମଣର ପାଦତଳେ ପଡ଼ି କହିଲେ, "ଗୁରୁଦେବ, ମୋର ଦୋଷ କ୍ଷମାକର । ଆଜି ଆପଣଙ୍କୁ ଦଣ୍ଡ ଦେଇ ମୁଁ ଘୋର ପାପ କରିଛି । ଆପଣ ମୋତେ ପିଲାଦିନେ ମାଡ଼ ଦେଇଥିଲେ । ତାହା ମୋର ଭଲପାଇଁ । ପ୍ରକୃତରେ ମୁଁ ମଣିଷ ହୋଇନାହିଁ । ମୁଁ ଅମଣିଷ । ଏ ପାପରୁ କିପରି ଉଦ୍ଧାର ପାଇବି ଉପାୟ କହନ୍ତୁ ।"

ବ୍ରାହ୍ମଣ ରଜାଙ୍କୁ ଆଶୀର୍ବାଦ କରି କହିଲେ, "ତୁମେ ମଣିଷ ହେବାକୁ ଯାଉଛ । ମୋର ସବୁ କଷ୍ଟ ମୁଁ ଭୁଲି ଗଲିଣି । ସାଧୁ ଭାବରେ ନ୍ୟାୟରେ ଚାଲ । ପ୍ରଜାଙ୍କୁ ନ୍ୟାୟରେ ଚଳାଅ । ମୁଁ ବିଦାୟ ନେଉଛି ।"

ରଜା ବ୍ରାହ୍ମଣଙ୍କୁ ଛାଡ଼ିଲେ ନାହିଁ । କହିଲେ, "ଆପଣ ଏଇଠାରେ ରହି କେବଳ ମୋତେ ମଣିଷ କରିବେ ନାହିଁ, ମୋ ପ୍ରଜାମାନଙ୍କୁ ମଧ୍ୟ ମଣିଷ କରିବେ । ଆପଣ ଆଜିଠାରୁ ହେଲେ ରାଜଗୁରୁ ।"

ରାଜଗୁରୁଙ୍କ ଶିକ୍ଷାରେ ରାଜ୍ୟଟିର ଲୋକେ ସାଧୁଭାବରେ ଦେଶରେ ଅନେକ ଭଲ କାମ କଲେ ।

## ପ୍ରଶ୍ନ

୧ । ଗୁରୁ କାହିଁକି ରାଜାପୁଅକୁ ମାଡ଼ ଦେଲେ ?

୨ । ରାଜସଭାରେ ଗୁରୁ କପରି ଅପମାନ ପାଇଲେ ?

୩ । କପରି ରାଜାଙ୍କ ମନ ବଦଳିଲା ?

---

## ପାପରୁ କ୍ଷୟ

ଗୋଟିଏ ଗାଆଁରେ ଧରମା ଓ ପରମା ବୋଲି ଦୁଇଜଣ ଲୋକ ଥିଲେ । ସେ ଦୁହିଁଙ୍କର ଖୁବ୍ ଭଲ ପଡ଼େ । ଦୁହେଁଯାକ ବଡ଼ ଗରିବ । ପର ଘରେ କାମ କରି ସାମାନ୍ୟ ମଜୁରି ପାଇ କଷ୍ଟରେ ଚଳନ୍ତି ।

ଦିନେ ଧରମା ପରମାକୁ କହିଲା, "ଭାଇ, ଏ ଗାଆଁରେ ରହି ଆଉ ଚଳି ହେବ ନାହିଁ । ସବୁ ଦିନେ ତ କାମ ମିଳୁନାହିଁ । ଯେଉଁଦିନ କି କାମ ମିଳୁଛି, ମଜୁରି ଏତେ କମ୍ ଯେ ସେଥିରେ କୁଟୁମ୍ବ ଚଳି ପାରୁନାହାନ୍ତି । ଏମିତି ହେଲେ ଉପାସରେ କେତେଦିନ ଚଳିବା ? ମୁଁ ଶୁଣୁଛି ଯେ କଟକ ସହରରେ ରୋଜ କାମ ମିଳିବଟି । ସେଠି ମଜୁରି ମଧ୍ୟ ବେଶି । ଏଠାରେ ଦୁଇ ତିନ ଦିନରେ ଯେତିକି ମିଳୁଛି, ସେଠାରେ ଦିନକରେ ସେଥିରୁ ବେଶି ମିଳିବ । ତାହାହେଲେ ଆମେ ନିଶ୍ଚିନ୍ତରେ ଚଳିବା । ବୁଢ଼ାକାଳକୁ ବି କିଛି ସଞ୍ଚି ରଖିପାରିବା ।"

ପରମା ମନକୁ ଏ କଥାଟା ପାଇଲା । ସେ କହିଲା, "ଭଲକଥା, ଚାଲ ଦୁହେଁଯାକ ସାଥି ହୋଇ ସହରରେ କାମ କରିବା । କିଛି ଟଙ୍କା ପଇସା ହୋଇଗଲେ ଗାଆଁକୁ ଫେରି ଆସିବା ।"

ଏହିପରି ବିଚାରି ଦୁହେଁଯାକ ସହରକୁ ଆସି ଗୋଟିଏ କାରଖାନାରେ କାମ ପାଇଲେ । ଭଲ କାମ କରି ସେମାନେ ବେଶି

ମଜୁରି ପାଇଲେ । ଆପଣା ଖରଚ ଚଳାଇ ସେମାନେ କିଛି ଜମାଇ ପାରିଲେ ।

ଦୁହେଁ ଗୋଟିଏ ଭଡ଼ାଘରେ ବସା କରିଥାନ୍ତି । ନିଜ ହାତରେ ରାନ୍ଧି ବାଢ଼ି ଖାଆନ୍ତି । ତେଣୁ ଅଳପ ଖର୍ଚ୍ଚରେ ଚଳନ୍ତି । ଏହିପରି ବରଷେ ଖଣ୍ଡେ ଗଲା । ଦିନେ ରାତିରେ ଦୁଇ ଭାଇ ବସି ହିସାବ କରି ଦେଖିଲେ ଯେ ତାଙ୍କ ପାଖରେ ହଜାରେ ଟଙ୍କା ହେଲାଣି ।

ପରମା କହିଲା, "ଭାଇ, ଘରୁ ବରଷେ ହେଲା ଆସିଲେଣି । ପିଲାଝିଲା କିପରି ଅଛନ୍ତି, ଜାଣି ପାରୁ ନ ଥାଉଁ । ବୁଢ଼ା ବାପ ଦେହ କିଅଣ ହେଲା କେଜାଣି ? ଏବେ ହାତରେ ତ ହଜାରେ ଟଙ୍କା ହେଲାଣି । ବସି ଖାଇଲେ ବି ଆମର ବରଷେ ଚାଲିଯିବ । ଚାଲ, ଗାଆଁକୁ ଯିବା । କିଛିଦିନ ରହି ଘରର ହାଲ ବୁଝାଶୁଝା କରି ପୁଣି ଆସିବା ।"

ଧରମା ଏଥିରେ ରାଜି ହେଲା । ଟଙ୍କାତକ ଧରି ଦୁଇସାଥିଯାକ ଘରକୁ ବାହାରିଲେ । ସେ କାଳରେ ତ ରେଳ ବା ମୋଟର ଗାଡ଼ି ନ ଥିଲା, ଚାଲି ଚାଲି ଯାଉଥାନ୍ତି । ସଞ୍ଜବେଳକୁ ସେମାନେ ଗୋଟିଏ ଜଙ୍ଗଲ ପାଖେ ପହଞ୍ଚିଲେ । ଜଙ୍ଗଲଟା ପାରି ହୋଇ କିଛି ବାଟ ଗଲେ ସେମାନଙ୍କ ଗାଆଁ ପଡ଼ିବ ।

ବଣପାଖେ ପହଞ୍ଚିଲା ପରେ ପରମା କହିଲା, "ଧରମୁ ଭାଇ, ଆମେ ଏତେଗୁଡ଼ାଏ ଟଙ୍କା ନେଇ ଗାଆଁକୁ ଯାଉଥାଉଁ । ଗାଆଁ ଲୋକେ ଏକଥା ଜାଣି ପାରିଲେ କିଏ କେତେ ପ୍ରକାରେ ଆମଠୁଁ ସେତକ ନେବାପାଇଁ ଚେଷ୍ଟା କରିବେ । କିଏ କହିବ—ମୋତେ କିଛି ଉଧାର ଦିଅ, ଆଉ କିଏ ବା କହିବ—ମୁଁ ଗରିବ, ମୋତେ ସାହାଯ୍ୟ ଦିଅ । ନ ହେଲାବେଳକୁ କିଏ ଆସି ରାତିରେ ଚୋରି କରି ନେଇଯିବ ।"

ଧରମା ବସ୍ତୁରଲ, "କଥାଟା ସତ । କିଛି ନ ହେଲେ ବି ହାତରେ ପଇସା ଥିଲେ କୁଆଡ଼େ ଖରଚ ହୋଇଯିବ ।" ସେ କହିଲ—"ତେବେ କଅଣ କରିବା ?"

ଫରମା—ମୁଁ ଗୋଟାଏ ଉପାୟ ପାଞ୍ଚିଛି । ସବୁଯାକ ଟଙ୍କା ଏଇ ବଣରେ ଗୋଟାଏ ଗଛମୂଳେ ପୋତିଦେଇ ଯିବା । ଦରକାର-ବେଳେ ଏଠାକୁ ଆସି ସେଥିରୁ କିଛି କିଛି ନେଇଯିବା । ବଣଭିତରେ ଗଛମୂଳେ ଟଙ୍କା ପୋତା ହୋଇଅଛି ବୋଲି କିଏ କାହିଁକି ଜାଣିବ?

ଧରମା ସାଧାସିଧା ଲୋକ; ଛନ୍ଦକପଟ କିଛି ଜାଣେନାହିଁ । ସେ ସାଙ୍ଗର କଥାରେ ରାଜି ହୋଇଗଲା ।

ଦୁହେଁ ଯାକ ମିଶି ଗୋଟିଏ ବରଗଛମୂଳେ ଗାତ ଖୋଳି ସେଥିରେ ଟଙ୍କାତକ ପୋତି ଦେଲେ । ଟଙ୍କା ପୋତି ସାରି ସେମାନେ ପୁଣି ଗାଁ ଆଡ଼କୁ ଚାଲିଗଲେ । ରାତି ପହରକ ସରକ ଗାଁରେ ପହଞ୍ଚି ଆପଣା ଆପଣା ଘରକୁ ଗଲେ ।

ବଣରେ ଗଛମୂଳେ ଟଙ୍କା ପୋତା ହୋଇଥିବା କଥା ସେ ଦୁହିଁଙ୍କ ଛଡ଼ା ଆଉ କାହାକୁ ଜଣା ନ ଥାଏ । ଘରକୁ ଫେରିବାର ଦୁଇ ଚାରିଦିନ ପରେ ଫରମା ଦିନେ ରାତିରେ ସେ ଜଙ୍ଗଲକୁ ଯାଇ ଗଛମୂଳ ଖୋଳି ସବୁଯାକ ଟଙ୍କା ନେଇ ଆସିଲା । ଫରମା ଯେତେ-ବେଳେ ଏତେଗୁଡ଼ାଏ ଟଙ୍କା ଆଣି ଘରେ ପହଞ୍ଚିଲା, ତାର ବାପା କାବା ହୋଇଗଲା । ସେ ଭାବିଲା ଯେ ଫରମା କେଉଁଠୁ ଟଙ୍କାତକ ଚୋରିକରି ଆଣିଛି । ତେଣୁ ସେ ପୁଅକୁ ସବୁକଥା ପଚାରିଲା । ଫରମା ମଧ୍ୟ ସବୁ ସତକଥା ବାପ ଆଗରେ କହିଲା । ବାପ ଜାଣିପାରିଲା ଯେ ପୁଅ ତା ସାଙ୍ଗକୁ ଠକିଦେଇ ସବୁ ଟଙ୍କା ନେଇ ଆସିଛି । କିନ୍ତୁ ବୁଢ଼ାର ଲୋଭ ତ କମ୍ ନୁହେଁ । ସେ ଦେଖିଲା ଯେ ଧରମା କଥାଟା ଜାଣିଲେ ଅଧେ ଭାଗ ଖୋଜିବ । ଚୁପ୍‌ଚାପ୍ ହୋଇ ରହିଲେ ଭଲ ।

ଦୁଇ ତିନ ମାସ ଗଲା । ଧରମା ପାଖରେ ଯାହା କିଛି ଅଳ୍ପ ଅଳ୍ପ ଟଙ୍କା ପଇସା ଥିଲା ସବୁ ଗଲାଣି । ସେ ଭାବିଲା, "ପୋତା ଟଙ୍କାରୁ କିଛି ନ ଆଣିଲେ ଆଉ ଚଳିହେବ ନାହିଁ ।

ସେ ଯାଇ ପରମାକୁ କହିଲା, "ଭାଇ, ଚଳିବାପାଇଁ ପଇସାଟିଏ ନାହିଁ । ଚାଲ, କିଛି ସେ ପୋତାଧନରୁ ଆଣିବା ।

ପରମା କିଛି ନ ଜାଣିଲା ପରି ମିଛରେ କହିଲା, "ମୋର ବି ସେଇ ପରି ଟାଣଟଣା । ହାତରେ ପଇସାଟିଏ ନାହିଁ । କାଲି ଯାଇ ଗଛମୂଳୁ କିଛି ଟଙ୍କା ଆଣିବା ।"

ଦୁହେଁ ଯାଇ ସାଙ୍ଗହୋଇ ଜଙ୍ଗଲକୁ ଗଲେ । ବରଗଛ-ମୂଳେ ପହଞ୍ଚି ଦେଖିଲେ ଯେ କିଏ ଗାତ ଖୋଳି ଟଙ୍କାଯାକ ନେଇଯାଇଛି । ପରମା କହିଲା, "ଦେଖ, ମୋ ଭାଗତକ ଦେଇ ପକାଅ । ତମ ଛଡ଼ା ଆଉ କେହି ଏ କାମ କରି ନାହିଁ । ଆଉ କିଏ ଏଠି ଟଙ୍କା ଥିବା କଥା ତ ଜାଣି ନ ଥିଲେ । ତମକୁ ମୁଁ ବିଶ୍ୱାସ କରିଥିଲି । ଶେଷକୁ ତମେ ମୋତେ ଠକି ସବୁଯାକ ଟଙ୍କା ଏକା ମାରିନେବାକୁ ବସିଛ । ମୁଁ ସହଜେ ଛାଡ଼ିବି ନାହିଁ ।"

ଧରମାର ବୁଦ୍ଧି ହଜିଗଲା । ତା ଟଙ୍କାତକ ତ ଗଲାଣି; ସେଥିରେ ପୁଣି ପରମା ଅପବାଦ ଦେଉଛି ଯେ ସେ ଚୋର । ଝିତସି କାନ୍ଦ କାନ୍ଦ ଘରକୁ ଆସିଲା ।

ଏଣେ ପରମା ଗାଁଯାକ କହି ବୁଲିଲା ଯେ ଧରମା ତାକୁ ଠକିବ ବୋଲି ଟଙ୍କାତକ କେତେବେଳେ ଚୋରେଇ ନେଇଆସିଛି । ଧରମା କହିଲା ଯେ ସେ ଟଙ୍କା ଆଣି ନାହିଁ ।

ଶେଷରେ କଥାଟା ବଡ଼େଇ ପଡ଼ିଲା । ଗାଁର ମୁଖିଆମାନେ ବସି ନ୍ୟାୟ-ବିଚାର କଲେ । କିଏ ପ୍ରକୃତରେ ଚୋର ବୁଝିବାକୁ ସେମାନେ ଏକାଠି ବସି ଦୁହିଁଙ୍କୁ ଡକାଇଲେ । ଦୁହେଁ ପହଞ୍ଚିବାରୁ

ପରମା କହିଲା—ଆପଣମାନେ ନ୍ୟାୟ ବିଚାର କରନ୍ତୁ । ଧରମା ଟଙ୍କାଯାକ ଆଣିଛି । ମୋ ଭାଗ ଟଙ୍କା ଫାଙ୍କି ଦେବାକୁ ସେ ଏପରି କରୁଛି ।

ଧରମାକୁ ପଚାରିବାରୁ ସେ କହିଲା—ସେଦିନ ଟଙ୍କା ପୋତି ଆସିବା ପରେ ଆଦୌ ସେ ଗଛ ମୂଳକୁ ଯାଇ ନାହିଁ । କାହା କଥ ଠିକ୍ ଏବେ କିପରି ଜଣାପଡ଼ିବ ?

ପଞ୍ଚାୟତ ଭିତରୁ ଜଣେ କହିଲେ, "ତେବେ ତମ୍ବା ତୁଳସୀ ଧରି ତୁମେ ହଲପ କରି କହ ଯେ ତୁମେ କେହି ଟଙ୍କା ଅଣିନାହିଁ ।"

ଧରମା ହଲପ କରିବାକୁ ବାହାରିବାରୁ ପରମା କହିଲା, "ସାକ୍ଷୀ ପ୍ରମାଣ ନ ଥିଲେ ସିନା ହଲପ ହୁଅନ୍ତିଏ । ଯେଉଁବେଳେ କେହି ଟଙ୍କା ଆଣିଥିବ ସେତେବେଳେ ବୃକ୍ଷଦେବତା ନିଶ୍ଚେ ଦେଖିଥିବେ । ତାଙ୍କୁ ନ ପଚାରି ହଲପ ଦେବା କିପରି ନ୍ୟାୟ ହେବ ?"

ଦେବତା କିପରି ସାକ୍ଷ୍ୟ ଦେବ ଏ କଥାଟା ଶୁଣି ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ଧରମା ତୁଣ୍ଡରୁ କଥା ବାହାରିଲା ନାହିଁ । ସମସ୍ତେ କହିଲେ—ବୃକ୍ଷଦେବତା କଅଣ ଏଠାକୁ ଆସି ସାକ୍ଷୀ ଦେବେ ?

ପରମା—ନା, ଆପଣମାନେ ସେ ଗଛ ମୂଳକୁ ଚାଲନ୍ତୁ । ସେ ଗଛରେ ବୃକ୍ଷଦେବତା ଅଛନ୍ତି । ତାଙ୍କୁ ପଚାରିବା, କିଏ ଟଙ୍କା ଚୋରି କରି ଆଣିଛି ?

ଭଦ୍ରଲୋକମାନେ ଏଥିରେ ରାଜି ହେଲେ । ତା ଆରଦିନ ସକାଳେ ସମସ୍ତେ ଜଙ୍ଗଲର ସେହି ଗଛ ପାଖକୁ ଯିବାକୁ ସ୍ଥିର କଲେ ।

ପରମା ରାତିରେ ବାପାକୁ କହିଲା, "ବାପା, ତୁମେ ତ ଜାଣ ମୁଁ କିପରି ଧରମାକୁ ଠକି ଟଙ୍କାତକ ନେଇ ଆସିଛି । ମୁଁ ଭଦ୍ରଲୋକଙ୍କୁ କହିଛି ଯେ, କିଏ ଚୋରି, ସେ କଥା ବୃକ୍ଷଦେବତା କହିଦେବ ।

କାଲି ସକାଳେ ସମସ୍ତେ ମେ ଗଛମୂଳକୁ ଯାଇ ସେହି କଥା ପଚାରିବେ । ତୁମେ ଗୋଟିଏ କାମ କଲେ ସବୁ ଠିକ୍ ହୋଇଯିବ । ଆଜି ରାତିରେ ସେ ଜଙ୍ଗଲକୁ ଯିବା । ସେ ବରଗଛ ଭିତରେ ଗୋଟାଏ କୋରଡ଼ ଅଛି । ତା ଭିତରେ ତୁମେ ଲୁଚି ରହିବ । ମୁଁ ରାତି-ରାତି ଘରକୁ ଫେରି ଆସିବି । କାଲି ସକାଳେ ଭଦ୍ରଲୋକଙ୍କୁ ସାଥିରେ ନେଇ ସେ ଗଛମୂଳକୁ ଯିବା । କିଏ ଟଙ୍କା ନେଇଛି ବୋଲି ମୁଁ ପଚାରିଲେ ତୁମେ କୋରଡ଼ ଭିତରେ ଥାଇ କହିବ, "ଧରମା ଟଙ୍କା ନେଇଛି ।"

ପୁଅ କଥାରେ ବୁଢ଼ା ରାଜି ହୋଇଗଲା । ପରମା ବୁଢ଼ାକୁ ନେଇ ବଣ ଭିତରେ ବରଗଛ କୋରଡ଼ରେ ପୂରାଇ ରାତି-ରାତି ଗାଆଁକୁ ଫେରି ଆସିଲା ।

ଆରଦିନ ସକାଳୁ ଭଦ୍ରଲୋକମାନେ ଧରମା ପରମା ଦୁହିଁଙ୍କୁ ଘେନି ସେଇ ବରଗଛ ମୂଳକୁ ଗଲେ । ପରମା ଗଛ ଆଡ଼କୁ ଚାହିଁ ଖୁବ୍ ବଡ଼ ପାଟି କରି କହିଲା, "ହେ ବୃକ୍ଷଦେବତା, ତୁମେ ସବୁବେଳେ ଏ ବୃକ୍ଷରେ ଅଛ । ଏ ଗଛମୂଳରୁ କିଏ ଟଙ୍କା ନେଇଛି, କହି ଦିଅ । ଭଦ୍ରଲୋକମାନଙ୍କ ମନରୁ ସନ୍ଦେହ ଯାଉ ।"

ବୁଢ଼ା ତ ଆଗରୁ ସବୁ ଜାଣିଥିଲା । ସେ କହିଲା, "ଧରମା ଗଛମୂଳ ଗାତରୁ ଟଙ୍କା ଖୋଳି ନେଇଛି ।"

ବୃକ୍ଷଦେବତା ଏପରି କହିଲେ ଭାବି ସମସ୍ତେ ଧରମାକୁ ଛି ଛି କଲେ । କିନ୍ତୁ ଧରମା ଭାବିଲା - ଏଥିରେ କିଛି କଥା ଅଛି । ବୃକ୍ଷ-ଦେବତା କଥା କହିବାର କେବେ ଶୁଣା ନ ଥିଲା । ତେଣୁ ସେ ଗୋଟାଏ ବୁଦ୍ଧି କଲା । ଆଖ ପାଖରୁ ଶୁଖିଲା ଡାଳପତ୍ର ଆଣି କୋରଡ଼ ମୁହଁରେ ଜମା କରି ସେଥିରେ ନିଆଁ ଲଗାଇଦେଲା । ଭିତରେ ଧୂଆଁ ପଶିଲା କ୍ଷଣି ବୁଢ଼ା ଅଣନିଶ୍ୱାସୀ ହୋଇ ବାହାରକୁ ପଳାଇ ଆସିଲା । ବାହାରିଲାବେଳକୁ ଦେହରେ ନିଆଁ ଲାଗି କେତେ ଜାଗା ପୋଡ଼ିଗଲା, ବୁଢ଼ା ଆକୁଳରେ କାନ୍ଦୁଥାଏ ।

ଭଦ୍ରଲୋକମାନେ ବୁଢ଼ାକୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ଜାଣି ପାରିଲେ ଯେ ପୁଅର ଦୋଷକୁ ଘୋଡ଼ାଇବା ପାଇଁ ବୁଢ଼ା ବୃକ୍ଷଦେବତା ସାଜିଥିଲା । ସେମାନେ କହିଲେ—"ଆରେ ବୁଢ଼ା ବୃକ୍ଷଦେବତା ହେବାର ଫଳ ପାଇ ସାରିଲୁ । ତୋର ପୋଡ଼ା ଘାଆ ଶୁଖିବାକୁ ଛଅମାସ ଲାଗିବ । ଏବେ ପରମା କଥା ବୁଝାଯିବ । ସେ ଗୋଟାଏ ଅସଲ ଠକ । ଆପେ ଟଙ୍କାଯାକ ଚୋରି କରି ଆଣି ଧରମା ଉପରେ ପୁଣି ଦୋଷ ଲଦି ଦେଉଥିଲା ।"

ପରମା ଦେଖିଲା ଯେ ତାର ଗୁଳାକ ଧରା ପଡ଼ିଗଲାଣି । ସେ ଭଦ୍ରଲୋକମାନଙ୍କ ଗୋଡ଼ତଳେ ପଡ଼ି କହିଲା, "ମୁଁ ଟଙ୍କା ଚୋରି କରିଥିଲି । ମୋତେ କ୍ଷମା ଦିଅନ୍ତୁ । ଧରମାର ଅଧେ ଟଙ୍କା ତାକୁ ମୁଁ ଦେଇ ପକାଇବି ।"

ଭଦ୍ରଲୋକମାନେ କହିଲେ, "ସେ ତ ତାର ହକ ଟଙ୍କା । ସେତିକ ଦେଲେ ହେବ ନାହିଁ । ତୁ ସବୁଯାକ ଟଙ୍କା ଆଣ । ତା ଭାଗ ଟଙ୍କା ସେ ନେଉ । ଆଉ ବାକି ଟଙ୍କାତକ ତାକୁ ଆମେ ପୁରସ୍କାର ଦେବୁଁ । ସେ ଆମ ଗାଁର ଜଣେ ସାଧୁ ଲୋକ । ସେ କାହାକୁ ଠକେ ନାହିଁ କି କେବେ ମିଛ କହେ ନାହିଁ ।"

ପରମା ଭଦ୍ରଲୋକମାନଙ୍କ କଥା ଅନୁସାରେ ସବୁଯାକ ଟଙ୍କା ଆଣି ଧରମାକୁ ଦେଲା । ତାର ବାପା ଅନେକ ଦିନଯାଏ ବିଛଣାରେ ପଡ଼ି ପଡ଼ି ଭଲ ହେଲା ।

## ପ୍ରଶ୍ନ

୧ । ପରମା ଓ ଧରମା କାହିଁକି ଗଛମୂଳେ ଟଙ୍କା ପୋତିଥିଲେ ?

୨ । ଧରମାକୁ ଚୋର ବୋଲି ପ୍ରମାଣ କରିବାକୁ ପରମା କଅଣ କରିଥିଲା ।

୩ । ସତକଥା କିପରି ଜଣା ପଡ଼ିଲା ?

୪ । ପରମା କି ଦଣ୍ଡ ପାଇଲା ଓ ଧରମା କି ପୁରସ୍କାର ପାଇଲା ?

---

# ବିଚାରପତିଙ୍କ ଚତୁରତା

ଗୋଟିଏ ସହରରେ ଜଣେ ସାଧୁ ଥିଲେ । ତାଙ୍କ ମୁହଁରେ ଦାଢ଼ି, ମୁଣ୍ଡରେ ଜଟା । ସକାଳୁ ଗୋଟିଏ କମଣ୍ଡଳୁ ଧରି ନଈରେ ସ୍ନାନ କରି ଆସନ୍ତି । ତା ପରେ ଦେହରେ ପାଉଁଶ ବୋଳି ହୋଇ ଧୂନି ପାଖେ ବସି ଜପତପ କରନ୍ତି । ଯେଉଁ ଯାତ୍ରୀମାନେ ସେ ବାଟେ ଯାଆନ୍ତି । ସେମାନେ ସାଧୁଙ୍କ ପାଦତଳେ ପଡ଼ି ଧୂନି-ପାଉଁଶରୁ ଟିକିଏ ନିଅନ୍ତି । ସାଧୁ କହନ୍ତି ଯେ, ଏଇ ପାଉଁଶର ମହିମା କମ୍ ନୁହେ ଯେ ଯାହା ମନ କରିବ, ସେଇ ବିଭୂତି ବଳରେ ତା ପାଇବ । ଲୋକେ ବି ସେଇ କଥା ବିଶ୍ୱାସ କରନ୍ତି ।

ସହରଠାରୁ ଅଳପ ଦୂରରେ ସାଧୁଙ୍କ କୁଡ଼ିଆ । ସେଥିରେ ସେ ରାତିରେ ବିଶ୍ରାମ ନିଅନ୍ତି । ରାତିରେ ସେଠାରେ ଧର୍ମ ଗ୍ରନ୍ଥ ପଢ଼ା ହୁଏ । ସହରର କେତେକ ବଡ଼ଲୋକ ସେଠାକୁ ଯାଇ ତାହା ଶୁଣନ୍ତି । ବାବାଜୀ ସେମାନଙ୍କୁ କେତେ ଧର୍ମଉପଦେଶ ଦିଅନ୍ତି । କେତେ ବଡଲୋକ ତାଙ୍କର ଶିଷ୍ୟ ମଧ୍ୟ ହୋଇଥାନ୍ତି । ତାଙ୍କପରି ସାଧୁ ସେ ସହରକୁ କେବେ ଆସି ନ ଥିଲେ ବୋଲି ଲୋକେ କହନ୍ତି ।

ସେହି ସହରରେ ଜଣେ ବଡ଼ ଧନୀ ଲୋକ ଥିଲେ । ତାଙ୍କ ଘରେ ଚାକର ବାକର ଛଡ଼ା ନିଜର କେହି ନ ଥିଲେ । ସେ ବୁଢ଼ା ହୋଇଗଲେ । ଶେଷକାଳକୁ ପୁରୀ ହରିଦ୍ୱାର, ମଥୁରା, ଦ୍ୱାରକା ଏଇ ସବୁ ତୀର୍ଥ ଦେଖିବାକୁ ମନ ହେଲା । କିନ୍ତୁ ଚିନ୍ତା ପଡ଼ିଲା, ଘରେ ଥିବା ଟଙ୍କା ପଇସା କାହା ଜିମା ରଖିଯିବେ ? ଯେତେ-ହେଲେ ଚାକର ଲୋକମାନଙ୍କୁ କି ବିଶ୍ୱାସ ଅଛି ? ସୁଯୋଗ ପାଇଲେ ସବୁ ଯେନି କୁଆଡ଼େ ପଳାଇବେ ।

ଶେଷରେ ସେ ଥୟ କଲେ – ଏଇ ବାବାଜୀଙ୍କ ପାଖେ ଟଙ୍କା ପଇସା ରଖି ଦେଇଯିବେ । ସାଧୁଙ୍କର ଧନରେ ଲୋଭ ନଥାଏ । ତାଙ୍କ ପାଖେ ଥିଲେ ଯାହା ଆପଣା ପାଖେ ଥିଲେ ସେଇଆ ।

ଦିନେ ଧନୀଲୋକଟି ସାଧୁଙ୍କ ପାଖକୁ ଯାଇ ଆପଣା ମନକଥା କହିଲେ । ପ୍ରଥମେ ସାଧୁ ଟିକିଏ ଅମଙ୍ଗ ହୋଇ କହିଲେ, "ବାପା ଟଙ୍କା ପଇସା ଛୁଇଁବା ପାପ; ଖାଲି ଚଳିବା ପାଇଁ ଭକ୍ତମାନେ ଯାହା ଦିଅନ୍ତି, ତାକୁ ମୁଁ ସାଥେ ସାଥେ ଖରଚ କରିଦିଏ । ପାଖରେ ଧନ ଥିଲେ ମନର ଚିନ୍ତା ବଢ଼ିଯାଏ । ଜପତପରେ ବାଧା ହୁଏ ।"

ବାବାଜୀଙ୍କ କଥା ଶୁଣି ଧନୀଲୋକ ଭାବିଲେ, ଯେପରି ହେଉ, ସାଧୁଙ୍କୁ ରାଜି କରାଇ ତାଙ୍କ ପାଖରେ ଟଙ୍କାତକ ରଖିଯିବି । ବଡ଼ ନିର୍ଲୋଭ ଲୋକ । ଟଙ୍କା ପଇସା ଛୁଇଁବାକୁ ସୁଦ୍ଧା ତାଙ୍କର ମନ ନାହିଁ । ତାଙ୍କ ପାଖରେ ରଖିଗଲେ ସେ କଅଣ ମୋ ଟଙ୍କା ବୁଡ଼ାଇ ଦେବେ ?

ବହୁତ କରି କହିବାରୁ ସାଧୁ ଟଙ୍କାତକ ନିଜ କୁଡ଼ିଆରେ ରଖିବାକୁ ରାଜି ହେଲେ । ମାତ୍ର ସେ ତାକୁ ନିଜ ହାତରେ ଛୁଇଁଲେ ନାହିଁ । ଧନୀଲୋକ ଆପେ ଟଙ୍କା ଆଣି ତାଙ୍କ କୁଡ଼ିଆରେ ଗୋଟିଏ ଗାତ ଖୋଳି ପୋତି ଦେଲେ । ବାବାଜୀ କହିଲେ, "ଦେଖ, ତୁମେ ତୀର୍ଥରୁ ଫେରି ଆସିଲାକ୍ଷଣି ତମ ଟଙ୍କା ନେଇଯିବ ।"

ଧନୀଲୋକ କିଛି ଟଙ୍କା ନେଇ ଭାରତର ତୀର୍ଥଯାକ ବୁଲି ବୁଲି ଛଅମାସ ପରେ ସହରକୁ ଫେରି ଆସିଲେ । ଘରେ ପହଞ୍ଚିବା ପର-ଦିନ ସେ ବାବାଜୀଙ୍କ ପାଖକୁ ଗଲେ । ସେତେବେଳକୁ କୁଡ଼ିଆରେ ବାବାଜୀଙ୍କ ପାଖେ ଆଉ କେହି ନ ଥିଲେ । ତୀର୍ଥଗୁଡ଼ିକ ବିଷୟରେ ଅନେକ କଥା ପଡ଼ିଲା । ଶେଷରେ ଧନୀ ଲୋକ କହିଲେ, "ବାବାଜୀ

ମହାରାଜ, ଆପଣଙ୍କ ଆଶୀର୍ବାଦରୁ କୁଶଳରେ ତୀର୍ଥ କରି ଫେରି ଆସିଛି । ଏବେ ମୋର ଟଙ୍କାତକ କୁଡ଼ିଆରୁ ଖୋଳି ନିଏ ।"

ବାବାଜୀ ଆକାଶରୁ ଖସିଲା ପରି କହିଲେ, "ଟଙ୍କା, କି ଟଙ୍କା ? ମୋ କୁଡ଼ିଆରେ କାହୁଁ ଟଙ୍କା ଆସିବ ?"

ଧନୀଲୋକଟି ବାବାଜୀଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ସେ ଭାବିଲେ, "ବାବାଜୀ ଧର୍ମ କର୍ମରେ ମାତିଥାଆନ୍ତି; ତାଙ୍କ କୁଡ଼ିଆରେ ମୁଁ ଟଙ୍କା ପୋତିଥିବା କଥା ଭୁଲି ଯାଇଥିବେ ।" ତେଣୁ ସେ ତୀର୍ଥକୁ ବାହାରିବା ଦିନର ସବୁ ଘଟଣା କହିଲେ । କିନ୍ତୁ ବାବାଜୀ ଟଙ୍କା ବିଷୟରେ କିଛି ଜାଣନ୍ତି ନାହିଁ ବୋଲି କହିଲେ । ଧନୀଲୋକ ଶେଷକୁ କହିଲେ, "ବାବାଜୀ, ଆପଣଙ୍କ ମନେ ନ ଥିବ । ମୋତେ ଅନୁମତି ଦେଲେ କୁଡ଼ିଆରୁ ଖୋଳି ମୋର ଟଙ୍କା ବାହାର କରି ନେବି ।"

ବାବାଜୀ ରାଗରେ ଧନୀ ଲୋକକୁ ବହୁତ ଅଭିଶାପ ଦେଲେ । କହିଲେ, "ଆଚ୍ଛା ଯା, ଖୋଳ ।"

ଧନୀଲୋକ ଯେଉଁ ଜାଗାରେ ଟଙ୍କା ପୋତିଥିଲେ, ସେ ଜାଗା ଖୋଳି ଦେଖିଲେ, କିଛି ନାହିଁ । ତାଙ୍କ ମୁଣ୍ଡ ଘୂରିଗଲା । କଅଣ କରିବେ ବୁଦ୍ଧି ଦିଶୁ ନଥାଏ । ସେ ମନ କଷ୍ଟରେ ଆପଣା ଘରକୁ ପଳାଇଗଲେ ।

ରାତିସାକ ସେ ଭାବୁଥାନ୍ତି—ମୁଁ କେଡ଼େ ଓଲୁ ! ଏ ଭଣ୍ଡ ବାବାଜୀକୁ ବିଶ୍ୱାସ କରି ସରିଗଲି । ପୂରା ଦୁଇହଜାର ଟଙ୍କା ବୁଡ଼ିଲା; ଏବେ ଚଳିବି କିପରି ? ବାବାଜୀ ଏପରି ଠକ ବୋଲି ଜାଣିଥିଲେ ମୁଁ କଅଣ ତା ପାଖେ ଟଙ୍କା ରଖି ଯାଇଥାନ୍ତି ? କଚେରୀରେ ଜଣାଇଲେ ବା କଅଣ ଫଳ ହେବ ? ବାବାଜୀଙ୍କୁ ଟଙ୍କା ଦେଇଗଲାବେଳେ

କେହି ସାକ୍ଷୀ ନଥିଲେ କ ମୁଁ ତାଙ୍କଠାରୁ କିଛି ଲେଖା ନେଇ ନ ଥିଲି । ଜଜ୍ କ ବିଚାର କରିବେ ?

ଘଣ୍ଟାଟାଯାକ ଏହିପରି ଚିନ୍ତାରେ ଗଲା । ତା ଆରଦିନ ସେ ଭାବିଲେ – ଫଳ ନ ହେବ ତ ନାହିଁ ; ଥରେ ଜଜଙ୍କୁ ସବୁ କଥା କହି ଦେଖେଁ ।

ସେ ଦିନ ଧର୍ମଲୋକ ଜଜ୍‌ଙ୍କ ପାଖକୁ ଯାଇ ସବୁ ଘଟଣା କହିଗଲେ। ଜଜ୍ ସବୁ ଶୁଣି କହିଲେ, "ତୁମେ ବାବାଜୀଙ୍କ ପାଖକୁ ଯାଇ ଖାଲି ଏତିକ କହି ଆସ—ଟଙ୍କାତକ ନ ପାଇଲେ ମୁଁ ଜଜ୍‌ଙ୍କୁ ଜଣାଇବି । ମୋ ପାଖକୁ ତୁମେ ଆସିଥିଲ ବୋଲି କହିବ ନାହିଁ । ଆଠଦିନ ପରେ ପୁଣି ମୋ ପାଖକୁ ଆସିବ ।"

ଧର୍ମଲୋକ ଜଜ୍‌ଙ୍କଠାରୁ ଏପରି ପରାମର୍ଶ ପାଇ ଘରକୁ ଫେରିଗଲେ ।

ସେ ଦିନ ଜଜ୍ ଅତି ସାଧାରଣ ବେଶରେ ଯାଇ ବାବାଜୀଙ୍କ କୁଡ଼ିଆରେ ପହଞ୍ଚିଲେ । ଯେତେବେଳେ ବାବାଜୀଙ୍କ ପାଖେ ଯେଉଁମାନେ ବସିଥିଲେ ସେମାନେ ଜଜ୍‌ଙ୍କୁ ଦେଖି ଚାଲିଗଲେ । ବାବାଜୀ ଭାବିଲେ ଜଜ୍ ନିଜେ ତାଙ୍କ ପାଖକୁ ଆସନ୍ତି, ଏ କଥା ଜଣା ପଡ଼ିଲେ ବହୁତ ଲୋକ ତାଙ୍କ ପାଖକୁ ଆସିବେ । ଟଙ୍କା ପଇସା ବି ବେଶି ମିଳିବ ।

ଜଜ୍ ଏଣୁତେଣୁ କଥା ପରେ କହିଲେ,"ମହାରାଜ, ମୁଁ ଗୋଟାଏ ବଡ଼ କାମରେ ଆପଣଙ୍କ ପାଖକୁ ଆସିଛି । ମୋତେ କିଛିଦିନ ପାଇଁ ବହୁତ ଦୂରକୁ ଯିବାକୁ ହେବ । ମୋ ପାଖେ ପଚିଶ ହଜାର ଟଙ୍କା ଅଛି । ତାକୁ ରଖିଦେଇ ଯିବାପାଇଁ ମୁଁ କୌଣସି ବିଶ୍ୱାସୀ ଲୋକ ଦେଖି ପାରୁନାହିଁ । ଆପଣଙ୍କ ପାଖେ ସେତକ ରଖି ଦେଇଯିବି । ପ୍ରାୟ

ଛଅ ମାସ ପରେ ଫେରି ଆସିଲେ ମୋ ଟଙ୍କା ମୁଁ ନେଇଯିବି । ଆପଣ ମୋ ପାଇଁ କଷ୍ଟ କରି ଏଇ କେତୋଟା ମାସ ଟଙ୍କାତକ ରଖିଥାନ୍ତୁ ।”

ପହିଲେ ବାବାଜୀ ଟିକଏ ଅମଙ୍ଗ ହେଉଥିଲେ । ପଛକୁ ରାଜି ହେଲେ । ଜଜ୍ ବିଦାୟ ହୋଇ ଆସିଲେ ।

ସେ ଦିନ ସଞ୍ଜବେଳକୁ ସେହି ଧର୍ମଲୋକଟି ବାବାଜୀଙ୍କ ପାଖକୁ ଆସି କହିଲା, “ଦେଖ ବାବାଜୀ, ମୁଁ ତୁମ ପାଖରେ ବିଶ୍ୱାସରେ ଦୁଇହଜାର ଟଂକା ରଖିଦେଇ ଯାଇଥିଲି । ଏବେ ତୁମେ ତାକୁ ଫାର୍କି ଦେବାକୁ ବସିଛ । ମୋ ଟଙ୍କାତକ ନ ପାଇଲେ ଛାଡ଼ିବି ନାହିଁ । ଯିବି, ଜଜ୍‌ଙ୍କ ପାଖେ ନାଲିସ କରିବି । ତୁମେ ଭାବୁଛ ଯେ ମୋ ପାଖେ କିଛି ଲେଖା ନାହିଁ କି ସାକ୍ଷୀ ନାହାନ୍ତି । ହେଉ, ମୋତ ଟଙ୍କା ମିଳୁ ବା ନ ମିଳୁ, ତମ ସାଧୁପଣିଆ ତ ସମସ୍ତେ ଜାଣିଯିବେ ।”

ଏ କଥା ଶୁଣି ବାବାଜୀ ମନେ ମନେ ଭାବିଲେ, “ଏ ଲୋକଟାର ଦୁଇ ହଜାର ଟଂକା ରଖିଛି । ମକଦ୍ଦମା କଲେ କିଛି ହେବ ନାହିଁ ସତ, କିନ୍ତୁ ଲୋକେ ତ ମୋତେ ସନ୍ଦେହ କରିବେ । ପୁଣି ଜଜ୍ ମୋ ପାଖେ ପଚାଶ ହଜାର ଟଙ୍କା ରଖିଦେଇ କୁଆଡ଼େ ଯିବେ ବୋଲି କହିଯାଇଛନ୍ତି । ତାଂକ ଆଗେ ଏ ଲୋକଟା ଆପତ୍ତି କଲେ ସେ ବି ମୋତେ ସନ୍ଦେହ କରି ମୋ ପାଖେ ଟଂକା ରଖିବେକି ନାହିଁ, କିଏ ଜାଣେ ? ମାତ୍ର ଏହାକୁ ତାର ଟଙ୍କା ଦେଇ ପକାଇଲେ ଜଜ୍ ପଚାଶ ହଜାର ଟଙ୍କା ରଖିବେ । ସେତକ ମୋର ହେବ । ଦୁଇ ହଜାରକୁ ଗୁହାଁ ବସିଲେ ପଚାଶ ହଜାର ଛାଡ଼ିବାକୁ ହେବ ।

ଏହିପରି ବହୁତ ଭାବି ସାଧୁ ସେହି ଧର୍ମଲୋକକୁ ପାଖରେ ବସାଇ କହିଲେ, “ବାବା, ମୁଁ ତୋତେ ପରୀକ୍ଷା କରି ଦେଖୁଥିଲି । ମୁଁ କଅଣ ମଠରେ ତୋର ଟଙ୍କା ଖାଇଦଅନ୍ତି ? ମୋତେ

ଟଙ୍କାରେ ବା କ ଦରକାର ? ଯାହା ଦରକାର ହେଉଛି, ଭକ୍ତମାନେ ତାହା ଦେଉଛନ୍ତି । ଖାଲି ମୋଠାରେ ତୋର କେତେ ବିଶ୍ୱାସ ଅଛି, ତା ଜାଣିବା ପାଇଁ ସେପରି କହିଥିଲି । ଯା ବାବା, ତୋ ଟଙ୍କା ନେଇ ଯା । ମୁଁ ସେ ଟଙ୍କାକୁ କୁଡ଼ିଆର ପୂର୍ବକୋଣରୁ ଆଣି ପଶ୍ଚିମ କୋଣରେ ପୋତି ରଖିଛି ।"

ଧର୍ମୀ ଲୋକ କୁଡ଼ିଆରୁ ତାର ଟଙ୍କାତକ ଖୋଳି ଆନନ୍ଦରେ ଫେରି ଆସିଲା । ବାବାଜୀ ଗୃହଁ ରହିଲେ, କେତେବେଳେ ଜଜ୍‌ଙ୍କର ପଚଶ ହଜାର ଟଙ୍କା ଆସିବ ?

ଏଣେ ଧର୍ମୀ ଲୋକଟି ଯାଇ ଜଜ୍‌ଙ୍କୁ ସବୁକଥା ଜଣାଇଲା । ବାବାଜୀଙ୍କୁ ଧରିନେବା ପାଇଁ ଜଜ୍ ଦୁଇଜଣ ଚପରାସି ପଠାଇଲେ । ସେମାନଙ୍କୁ ଦୂରରୁ ଦେଖି ବାବାଜୀ ଭାବିଲେ ଯେ ଜଜ୍ ସେମାନଙ୍କ ହାତରେ ଟଙ୍କା ପଠାଇ ଦେଇଅଛନ୍ତି । ପଛରେ ନିଜେ ଆସିବେ । ବାବାଜୀଙ୍କ ମନ କୁଣ୍ଢେ ମୋଟ, ଆଜି ପଚଶ ହଜାର ଟଙ୍କା ତାଙ୍କ ହାତରେ ପଡ଼ିବ, କଅଣ ସହଜ କଥା ?

କିନ୍ତୁ ଚପରାସି ଦୁହେଁ ବାବାଜୀଙ୍କ ହାତଗୋଡ଼ରେ ବେଡ଼ି ପକାଇ ତାଙ୍କୁ ଦଉଡ଼ିରେ ବାନ୍ଧି ନେଇଗଲେ । ସେତେବେଳକୁ ବାବାଜୀଙ୍କ ମନ ସୁଖଟା ଭାଜିଗଲା । ଜଜ୍‌ଙ୍କ ପାଖେ ବାବାଜୀଙ୍କର ବିଚାର ଆରମ୍ଭ ହେଲା । ଠକିବାକୁ ଚେଷ୍ଟା କରୁଥିବା ଦୋଷରେ ବାବାଜୀଙ୍କୁ ପାଞ୍ଚ ବରଷ ଜେଲଖାନାରେ ରଖାଗଲା ।

ବାବାଜୀ ଜଣିଆ ମିଳି ଲୁହା ତାଉଆରେ ଭାତ ଖାଇ, ଜେଲ୍-ଖାନାରେ ପାଞ୍ଚଟି ବର୍ଷ ଘଣା ପେଲିଲେ । ରାତିରେ ଶୋଇବାବେଳେ

ଭାବୁଥାନ୍ତି, "ଓଃ କି ଭୁଲ କଲି ! କାହିଁକି ମୁଁ ପଚିଶ ହଜାରକୁ ଲୋଭ କଲି !

## ପ୍ରଶ୍ନ

୧ । ଧନୀ ଲୋକ କାହିଁକି ବାବାଜୀଙ୍କ ପାଖେ ଟଙ୍କା ରଖିଗଲେ ?

୨ । ଜଜ୍ କାହିଁକି ବାବାଜୀଙ୍କ ପାଖେ ଟଙ୍କାରଖି ଅନ୍ୟଆଡ଼େ ମିଳିବ ବୋଲି କହିଲେ ?

୩ । ଏହି ଗଳ୍ପରୁ କଣ ଶିକ୍ଷା କଲ ?

---

## ସତ୍ୟକାମ ଜାବାଳି

ପାଞ୍ଚ ହଜାର ବର୍ଷ ତଳର କଥା । ସେ କାଳରେ ପିଲାମାନେ ଗୁରୁଙ୍କ ଘରେ ରହି ତାଙ୍କର ସେବା କରି ବେଦ ପଢ଼ୁଥିଲେ । ପାଠ ପଢ଼ି ଚାକିରୀ କରିବା କଥା ସେ କାଳରେ ଶୁଣା ନଥିଲା । ଜ୍ଞାନ ପାଇବାପାଇଁ, ଭଲ ମଣିଷ ହେବାପାଇଁ ପିଲାଏ ଖାଲି ପଢ଼ୁଥିଲେ ।

ଗୁରୁମାନେ ବି ପଇସା ଲୋଭରେ ଯାହାକୁ ଇଚ୍ଛା ତାକୁ ଶିଷ୍ୟ କରୁ ନ ଥିଲେ । ପିଲାର ସ୍ୱଭାବ କପଟ, ତାର ପଢ଼ାରେ ମନ ଅଛି କି ନା, ସେ କପଟ କୁଳରେ ଜନ୍ମ, ଏ ସବୁ ବୁଝି ଗୁରୁ ତାକୁ ଶିଷ୍ୟ କରୁଥିଲେ । ଖରାପ ପିଲାଙ୍କୁ କୌଣସି ଗୁରୁ ପାଖରେ ରଖିବାକୁ ଚାହୁଁ ନଥିଲେ ।

ସେଇ ପୁରୁଣା କାଳରେ ଜାବାଳା ବୋଲି ଗୋଟିଏ ଗରିବ ସ୍ତ୍ରୀ ଲୋକ ଥିଲା । ସେ ପେଟ ପୋଷିବାପାଇଁ କେତେ ଲୋକଙ୍କ ଘରେ ବାସନ ମାଜେ, ପାଣି ବହେ । ଏହିପରି କଷ୍ଟରେ ଚଳେ ।

ତାର ଗୋଟିଏ ପୁଅ ହେଲା । ପିଲାଟି ଜାବାଳାର ପୁଅ ବୋଲି ତାକୁ ସମସ୍ତେ ଜାବାଲ ବୋଲି ଡାକିଲେ । ତା ମାଆ କେତେ ଋଷିଙ୍କ ଘରେ କାମ କରେ । ଜାବାଲକୁ ସାଙ୍ଗରେ ନେଇଯାଏ । ସେ ଟିକିଏ ବଡ଼ ହୋଇଗଲା । ଦେଖିଲା ଯେ ଋଷିମାନଙ୍କ ପାଖେ କେତେ ପିଲା ପାଠ ପଢ଼ୁଛନ୍ତି, କେତେ ଭଲ କଥା ଶିଖୁଛନ୍ତି । ତାର ମନ ହେଲା—ମୁଁ ସେମାନଙ୍କ ପରି କୌଣସି ଋଷିଙ୍କ ପାଖେ ପାଠ ପଢ଼ନ୍ତି, ତାଙ୍କରି ପରି ପଣ୍ଡିତ ହୁଅନ୍ତି କି ?

ଦିନେ ସେ ତାର ମାଆକୁ କହିଲା, "ମାଆ, ମୁଁ ଦେଖୁଛି ଯେ ଋଷିମାନଙ୍କ ଆଶ୍ରମରେ ଅନେକ ପିଲା ପାଠ ପଢ଼ୁଛନ୍ତି, ବେଦ ବୋଲୁଛନ୍ତି । ସେମାନେ ଯେଉଁ ସବୁ କଥା ବିଚାର କରୁଛନ୍ତି, ମୁଁ ତା ବୁଝିପାରୁ ନାହିଁ । ମୁଁ ଯାଇ କୌଣସି ଋଷିଙ୍କ ପାଖେ ପାଠ ପଢ଼ିଲେ ସେମାନଙ୍କ ପରି ହୁଅନ୍ତି ।"

ଜାବାଳା ପୁଅର ପାଠପଢ଼ିବା ପାଇଁ ଏପରି ମନଥିବାର ଦେଖି ଖୁସି ହେଲା । ଗରିବ ଦାସୀର ପୁଅ ପଣ୍ଡିତ ହେବ, ପାଞ୍ଚଜଣରେ ଜଣେ ବୋଲି ଗଣା ହେବ—ଏ କଣ କମ ଭାଗ୍ୟର କଥା !

ସେ କହିଲେ, "ବାପା, ତୋର ପାଠ ପଢ଼ିବାକୁ ମନ ! ଭଲ କଥା । ତୁ ଋଷିମାନଙ୍କ ଆଶ୍ରମରେ ବୁଲି ଜଣକୁ ଗୁରୁ କର । ସେ ଶିକ୍ଷା ଦେଲେ ତୁ ମଣିଷ ହେବୁ । ମୋ ଦୁଃଖ ଘୁଞ୍ଚିଯିବ ।"

ଜାବାଲ କେତେ ଆଶ୍ରମ ବୁଲି ବୁଲି ଜଣେ ଋଷିଙ୍କୁ ଗୁରୁ କରିବାକୁ ସ୍ଥିର କଲା । ଋଷି ଗଛମୂଳରେ ବସି ତପସ୍ୟା କରୁଥାନ୍ତି । ତାଙ୍କ ମୁହଁରୁ ତେଜ ଫୁଟି ପଡ଼ୁଥାଏ ।



ଜାବାଲ ତାଙ୍କ ପାଦତଳେ ପ୍ରଣାମ କରି ଠିଆହେଲା । କିଛି ସମୟ ପରେ ଋଷିଙ୍କ ଧ୍ୟାନ ଭାଙ୍ଗିଲା । ସେ ପିଲାଟିକୁ ଦେଖି ପଚାରିଲେ, "ତୁମେ କାହିଁକି ଆସିଛ ?" ଜାବାଲ କହିଲା, "ମହାଶୟ ! ମୁଁ ଗୋଟିଏ ଗରିବ ପିଲା । ମୋର ପାଠ ପଢ଼ିବା ପାଇଁ ମନ । ଆପଣ ଦୟା କରି ମୋତେ ଶିକ୍ଷା ଦିଅନ୍ତୁ ।"

ଋଷି ଦେଖିଲେ ଯେ ପିଲାଟି ବଡ଼ ସରଳ । ଛଳ କପଟ ତାଠାରେ ଟିକିଏ ହେଲେ ନାହିଁ । ସେ କହିଲେ, "ଭଲ କଥା, ଯାହାର ପାଠ ପଢ଼ିବାକୁ ମନ, ତାକୁ ନ ପଢ଼ାଇଲେ ଆଉ

କାହାକୁ ପଢ଼ାଇବ ? ତେବେ ଗୋଟିଏ କଥା, ମୁଁ ଯାହାକୁ ଇଚ୍ଛା ତାହାକୁ ପାଠ ପଢ଼ାଏ ନାହିଁ । ଯାହାର ଉଚ୍ଚ କୁଳରେ ଜନ୍ମ, ଯିଏ କେବେ ମିଛ କହେ ନାହିଁ, ଯାହାର ସ୍ୱଭାବ ଭଲ, ସେହିପରି ପିଲାଙ୍କୁ ମୁଁ ଆଶ୍ରମରେ ରଖି ଶିକ୍ଷାଦିଏ । ତୋର ସବୁ ହାଲ ନ ବୁଝିଲେ ତୋତେ ଆଶ୍ରମରେ ରଖିବି କିପରି ? ତୁ ଆଜି ଯାଇ ତୋର ଜାତି ଗୋତ୍ର ସବୁ ବୁଝି କାଲି ଆସିବୁ । ମୁଁ ସବୁ କଥା ବୁଝିଲେ ତୋତେ ଶିଷ୍ୟ କରିପାରେ ।"

ଜାବାଳ ଘରକୁ ଫେରିଯାଇ ମାଆକୁ କହିଲା, "ମାଆ, ମୁଁ ଜଣେ ଋଷିଙ୍କୁ ଗୁରୁ କରିବାକୁ ସ୍ଥିର କରିଛି । ସେ ମୋର ଜାତି ଗୋତ୍ର ଜାଣିଲେ ରଖିବାକୁ କହିଛନ୍ତି ।"

ଏହା ଶୁଣି ଜାବାଲା କାନ୍ଦି କାନ୍ଦି ହୋଇ କହିଲେ, "ବାପ, ତୁ ଋଷିଙ୍କୁ କହିବୁ—ମୋର ଜାତି ଗୋତ୍ର ଜଣାନାହିଁ । ମୋର ମାଆଟି ଛଡ଼ା ଆଉ କେହି ନାହାନ୍ତି । ତା ନା ଜାବାଲା, ସେଥିପାଇଁ ମୋତେ ଜାବାଳ ବୋଲି ଡାକନ୍ତି ।"

ଜାବାଳ ତା ଆରଦିନ ପୁଣି ଋଷିଙ୍କ ପାଖେ ପହଞ୍ଚି କହିଲା, "ମହାଶୟ, ମୁଁ ଆପଣଙ୍କ କଥା ଅନୁସାରେ ମାଆଙ୍କୁ ମୋର ଜାତି ଗୋତ୍ର ପଚାରିଲି । ସେ ଏତିକି କହିଲେ ଯେ – ମୁଁ ତାଙ୍କର ପୁଅ । ଜାତିଗୋତ୍ର ବିଷୟରେ କିଛି କହିଲେ ନାହିଁ । ମୋର ବାପାଙ୍କୁ ମୁଁ କେବେ ଦେଖିନାହିଁ କି ମୋର ଜାତି କେହି ମୋତେ କହି ନାହାନ୍ତି । ମାଆ ମୋତେ ସବୁବେଳେ ସତ କଥା କହିବାକୁ କହନ୍ତି । କେବେ ମିଛ କହୁଛି ବୋଲି ମୁଁ ଜାଣେ ନାହିଁ । ମାଆ ସେଥିପାଇଁ ମୋ ନା ଦେଇଛନ୍ତି ସତ୍ୟକାମ ।"

ଋଷିଙ୍କର ନାମ ଗୌତମ । ସେ ପିଲାଟି ଉପରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ କହିଲେ, "ବତ୍ସ, ତୋପରି ସତ୍ୟବାଦୀ ପିଲା ମୁଁ ଆଜି ଦେଖିନାହିଁ । ତୁ ଯେଉଁ ଶ୍ରେଷ୍ଠ କୁଳରେ ଜନ୍ମ ହୋଇଥିଲେ ବି ତୋତେ ଶିଷ୍ୟ କରି ରଖିବି । ଖାଲି ଉଚ୍ଚ କୁଳରେ ଜନ୍ମ ହେଲେ ତ ହେବ ନାହିଁ । ବ୍ରାହ୍ମଣ କୁଳରେ ଜନ୍ମ ହୋଇଥାଇ ପଛକେ କେହି ଯେବେ ମିଛ କହେ, ସେ ଚଣ୍ଡାଳଙ୍କଠାରୁ ହୀନ । ତୁ ଦାସୀର ପୁଅ ହେଲେ ମଧ୍ୟ ସତ କହିବାରୁ ବ୍ରାହ୍ମଣ ସମାନ । ତୁ ଆଜିଠାରୁ ମୋର ଶିଷ୍ୟ ହେଲୁ ।"

ସତ୍ୟକାମ ଜାବାଳ ଗୌତମଙ୍କ ଆଶ୍ରମରେ ରହି ଅନ୍ୟ ପିଲାମାନଙ୍କ ସାଥିରେ ପଢ଼ିଲେ । ସେମାନଙ୍କ ପରି ସେ ମଧ୍ୟ ଗୁରୁଙ୍କର ସବୁ କାମ କରୁଥିଲେ । ଗୁରୁଙ୍କ ଆଶ୍ରମରେ ବହୁତଗୁଡ଼ାଏ ଗାଈ ଥିଲେ । ସେମାନଙ୍କୁ ଜଗାରଖା କରିବା କାମ ଶିଷ୍ୟମାନେ କରନ୍ତି । ଦିନେ ଗୌତମ ସତ୍ୟକାମଙ୍କୁ ଡାକି କହିଲେ, "ବତ୍ସ, ଆଶ୍ରମର ଏ ଗାଈଗୁଡ଼ିକ ଏଠାରେ ଭଲ ଖାଇବାକୁ ପାଉନାହାନ୍ତି । ସେମାନଙ୍କ ଦେହ ଶୁଖିଗଲାଣି । ତୁମେ ଏମାନଙ୍କୁ ଦୂରକୁ ନେଇ ଜଗାରଖା କର; ସେମାନଙ୍କ ଖିଆପିଆ ବିଷୟରେ ଭଲକରି ନଜର ଦେବ । କାହାରି କାହାରି ବାଛୁରି ହେବେ । ପଲଟିରେ ହଜାରେ ଗୋରୁ ହୋଇଗଲେ ପୁଣି ସେମାନଙ୍କୁ ଆଶ୍ରମକୁ ଘେନି ଆସିବ ।"

ଗୁରୁଙ୍କର ଆଦେଶ ପାଇ ସତ୍ୟକାମ ଆନନ୍ଦରେ ଟିଗାରୁ ପଲଟି ନେଇ ଘୋର ବଣକୁ ଚାଲିଗଲେ । ଭଲ ଘାସ ଥିବା ଜାଗା ଦେଖି ଗୋରୁମାନଙ୍କୁ ଚରିବାକୁ ଛାଡ଼ିଦେଲେ । ସତ୍ୟକାମ ଦିନ ରାତି ଗୋରୁଙ୍କ ସେବାରେ ରହିଥାନ୍ତି । ପଲ ଭିତରେ ରାତିରେ ଶୁଅନ୍ତି ଦିନରେ ସେ ଗଛ, ପତ୍ର, ଫୁଲ, ଫଳ ଦେଖି ଭାବନ୍ତି—ଆହା, ଏପରି

ସୁନ୍ଦର କଳକ୍ଷ ସବୁ କିଏ ଗଢ଼ିଛି ? ଯିଏ ଏ ସବୁ ଗଢ଼ିଛି, ସେ କେଡ଼େ ସୁନ୍ଦର ହୋଇ ନଥିବ !

କିଛି କାଳ ମଧ୍ୟରେ ଗାଈପଲ ବଢ଼ି ହଜାରେ ହୋଇଗଲେ । ସେ ସେମାନଙ୍କୁ ଘେନି ଗୌତମଙ୍କ ଆଶ୍ରମକୁ ଫେରି ଆସିଲେ । ଗୁରୁ ଶିଷ୍ୟର ଭକ୍ତି ଓ ସେବା ଦେଖି ତା ଉପରେ ଅତି ସନ୍ତୁଷ୍ଟ ହୋଇ ଆଶୀର୍ବାଦ କଲେ । ସେତେବେଳକୁ ସତ୍ୟକାମ ସବୁ ପ୍ରକାର ବିଦ୍ୟା ଶିଖି ସାରିଥାନ୍ତି । ଗୌତମ କହିଲେ, "ମୋଠାରୁ ତୁମର ଶିଖିବାର ଆଉ କିଛି ନାହିଁ । ଏବେ ମାଆଙ୍କ ପାଖକୁ ଫେରିଯାଅ ।"

ସତ୍ୟକାମ ମାଆଙ୍କ ପାଖକୁ ଫେରିଗଲେ ନାହିଁ । ସେ ଗୌତମଙ୍କ ଆଶ୍ରମରେ ରହି ପିଲମାନଙ୍କୁ ନାନା ଶିକ୍ଷା ଦେଲେ । ସେ ନିଜେ ଯେପରି ଗୁରୁଭକ୍ତ ଓ ସତ୍ୟବାଦୀ ଥିଲେ, ତାଙ୍କ ଛାତ୍ରମାନେ ମଧ୍ୟ ସେହିପରି ହେଲେ ।

## ପ୍ରଶ୍ନ

୧ । ସତ୍ୟକାମକୁ କାହିଁକି ଜାବାଲ ବୋଲି ଡାକୁଥିଲେ ?

୨ । ସତ୍ୟକାମର କି ଗୁଣ ଦେଖି ଗୌତମ ତାକୁ ଶିଷ୍ୟ କରି ରଖିଲେ ?

୩ । ଗୁରୁ ସତ୍ୟକାମକୁ କି କାମ କରିବା ପାଇଁ ଦେଇଥିଲେ ?

୪ । ସତ୍ୟକାମର ଜୀବନରୁ କି ଶିକ୍ଷା ମିଳୁଛି ?

---

ମୁଦ୍ରାକର— ଶ୍ରୀ ସତ୍ୟନାରାୟଣ ମିଶ୍ର, ଓଡ଼ିଶା ପବ୍ଲିଶିଂ ପ୍ରେସ୍
କଟକ—୨ ।୧୯୫୯।